# ACHARYA HARIHAR *Annual*



ଆଚାର୍ଯ୍ୟ ହରିହରଙ୍କର ସାତ୍ତ୍ୱିକ ପ୍ରଭାବ କାହାରି ଉପରେ ପଡୁ ନ ପଡୁ ମୋ ଉପରେ ବେଶ୍ ପ୍ରଭାବ ପକାଇଛି । ସେ ତାଙ୍କର ସମସ୍ତ ଜୀବନ ଜନତାର-ସେବାରେ ନିୟୋଗ କରି ଆସିଛନ୍ତି । ସେଥିପାଇଁ ସେ କେବଳ ଉତ୍କଳର ନୁହନ୍ତି, ସବୁ ପ୍ରଦେଶବାସୀଙ୍କର ପୂଜ୍ୟବ୍ୟକ୍ତି । ଦେଶର ଯୁବକମାନଙ୍କ ମନରେ ତାଙ୍କର ଆଦର୍ଶ ପ୍ରତିଫଳିତ ହେବ— ଏହା ମୋର ବିଶ୍ୱାସ ।

-ରାଜେନ୍ଦ୍ର ପ୍ରସାଦ


ACHARYA HARIHAR EDUCATION SOCIETY
BHUBANESWAR

# ACHARYA HARIHAR ANNUAL

# 1984

( a souvenir )

"ଆପଣ ଜାଣି ନାହାନ୍ତି । ଦାସେ ଆପଣଙ୍କ ତୁଣ୍ଡରୁ
ଯେଉଁ କଥା ବାହାରେ ତାହା କଂଠ, ଗୋଦାବରୀଶଙ୍କ
ପ୍ରତି ଉପଦେଶ, କିନ୍ତୁ ମୋ ପ୍ରତି ତାହା ଯେ ଆଦେଶ ।"

—ହରିହର ଦାସ

ACHARYA HARIHAR EDUCATION SOCIETY

BHUBANESWAR




ବନ୍ଧୁଗଣ,

ଆଚାର୍ଯ୍ୟ ହରିହର ଏଜୁକେସନ ସୋସାଇଟିର ଏହା ତୃତୀୟ ବର୍ଷ । ଆଚାର୍ଯ୍ୟ ହରିହରଙ୍କର ସ୍ମୃତି ରକ୍ଷା କରିବା ସଙ୍ଗେ ସଙ୍ଗେ ତାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଆମର ସହଯୋଗୀ ଓ ସହକର୍ମୀମାନେ ଶିକ୍ଷା, ନୈତିକତା ଓ ସମାଜ ସେବା କ୍ଷେତ୍ରରେ ନୂତନ ଆଭିମୁଖ୍ୟ ସୃଷ୍ଟି କରିବାକୁ ଯତ୍ନବାନ୍ ରହି ଆସିଛନ୍ତି ।

ଏ ଦିଗରେ ଆମ୍ଭେମାନେ ଯେଉଁ କାର୍ଯ୍ୟକ୍ରମ ଆରମ୍ଭ କରିଛୁ ତାହାକୁ ପୂର୍ଣ୍ଣାଙ୍ଗ କରିବା ପାଇଁ ଆମକୁ ବହୁ ପଥ ଅତିକ୍ରମ କରିବାକୁ ପଡ଼ିବ ।

ଶିକ୍ଷାର ଗୁଣାତ୍ମକ ଅଭିବୃଦ୍ଧି କରିଆସେ ଉତ୍ତମ ନାଗରିକ ସୃଷ୍ଟି କରିବା ଆମର କର୍ତ୍ତବ୍ୟ । ଏହି ପ୍ରଚେଷ୍ଟାରେ ଆମେ ଲାଗି ରହିଛୁ । ଆଶା, ଆପଣମାନଙ୍କର ଶୁଭେଚ୍ଛା, ସହଯୋଗ ଓ ସମର୍ଥନ ପାଇବୁ ।

ସ୍ୱାକ୍ଷରିତ

ଗୁଣଗ୍ରାହୀ ମିଶ୍ର

(ସଭାପତି)

# NEWS & NOTES

## Acharya Harihar Education Society

( P. R.—589/385—1981-82 )

Income Tax Registration No. ADM (GL) 53/12-A/81-82

The Society with its limited resources marches into the 3rd year.

On February 27th 198⁴, the Society observed the Annual day along with the observation of Acharya Harihar's birth day. Sri Ramkrishna Pati, M. L. A., Bhubaneswar was the chief guest of the Function. On March 10th, 1983, a meeting was held to observe the Annual Sraddha Ceremony of Acharya Harihar Smt. Nandini Satpathy, Sri Pradyumna Bal & Sri A. V. Swami Field Diractor OXFAM were guests of honour. All of them highly praised the activities of the Society and assured of their assistance in the ongoing projects. Acharya Harihar Annual, 1983 was formaly released. The result of the competitions held under the supervision of Sri Jimut Kumar Tripathy was announced.

The Society is grateful to the State Government of Orissa for providing us with Rs 2000/- as Kenduleaf grant. We also received a grant of Rs 990/- from the Education & Youth Services Department for Youth Welfare Projects. Acharya Harihar Mahavidyalaya arranged a debate competition among the High School students on "Dowry as a social evil".

During the year Sri Yasobant Narayan Dhar left the Mahavidyalaya to join Reserve Bank of India, Bhubaneswar. Sri Jagdish Rath our part-time History Lecturer left as 'Correspondent" to Dainika Asha, a daily News Paper, published from Berham ur Smt Nirupama Dash, Lecturer in Political Science remained in-charge of the Principalship of the College for four months. We are pleased to announce that Smt. Dash was bleesed withad a ughter, So she had to relinquish the responsibility as Principal and Sri Jitendra Prasad Prusty, Lecturer in Sociology has been nominated as Principal of the Mahavidyalaya Sri Debiprasanna Patnaik left the college to take up an assignment with OXFAM (India) Trust as Research Co-ordinator for five months.

With the collaboration of "Mukti" a Dramatic organisation, the society staged the one-Act Play 'Abolakara Upakhyana" at Soochana Bhavan Sri Radha Krishna Ghadei's was sponsored by the Society to participate in the fifteen day's workshop on Rural Development & the Media organised by Development News of India, Bhubaneswar

We are thankful to Professor Satrughna Nath & the Lecturers of Nalini Devi Women's College of Education for assisting us in delivering lectures in the Moral Instruction class. We are also introducing lectures on Popular Science for the Student Body.

Akhanda Jyoti of Pandit Nilakantha Das was received at Acharya Harihar Mahavidyalaya. A meeting was organised by the society. Sri Biswanath Mahapatra who was an associate of Pandit Nilakantha, presided over the function. Sri Nityananda Misra, M. P., President Orissa Pradesh Congress Committee and Sri Jugal Kishore Patnaik, Minister of Stste in Labour & Tourism were guests of honour. Prizes were awarded to the students.

A survey on Parsent Guardians response on Higher Secondary/College Education in Bhubaneswar was conducted by the Students & the members of the society. The report is being published in Acharya Harihar Annual 1984.

The society proveded a grant to Timiraloka for publishing a special issue of the Magazine for the teenagers on Acharya Harihar

We continue to struggle to establish other Institutional activities of the society. We hope by the grace of God, in a few years time we will estabiish ourselves on a firm footing to provide a forum for need-based education in the State.

Sd/- Jimut Kumar Tripathy
**Programme Co-ordinator**

Sd/- Bhabagrahi Misra
**President**

# ସତ୍ୟ, ସ୍ନେହ ଓ ସେବାର ସାଧକ

**ଶ୍ରୀ ରାଧାନାଥ ରଥ**

ଉତ୍କଳର ପୁରାତନ ଓ ଆଧୁନିକ ଯୁଗର ସନ୍ଧି ସମୟରେ ଶିକ୍ଷା ଓ ସେବା କ୍ଷେତ୍ରରେ ଆବିର୍ଭୂତ ହୋଇ ଥିବା ଗୁରୁଜନ ଓ ସାଧୁଜନମାନଙ୍କ ମଧ୍ୟରେ ଉତ୍କଳ କାହିଁକି, ଭାରତର କୁଳବୃଦ୍ଧ ସନ୍ଥ ବିନୋବାଙ୍କ ସର୍ବୋଦୟ ଆନ୍ଦୋଳନର ନୀରବ ସାଧକ, ସତ୍ୟବାଦୀ ବକୁଳବନ ବିଦ୍ୟାଳୟର ଆଦର୍ଶ ଆଚାର୍ଯ୍ୟ, ଗୁରୁଶ୍ରେଷ୍ଠ ହରିହରଙ୍କର ଆଜି ଚତୁର୍ନବତିତମ ଜନ୍ମ ଦିବସ ଉପଲକ୍ଷେ ଆମ୍ଭେମାନେ ଗୁରୁଦେବ ଆଚାର୍ଯ୍ୟଙ୍କ ପାଦତଳେ ଭକ୍ତିପୂର୍ଣ୍ଣ ଭାବରେ ପ୍ରଣାମ କରି ତାଙ୍କ ଜୀବନର ସାର୍ଥକତା ଓ ତାଙ୍କ ଆଦର୍ଶର ମହନୀୟତାରେ ସେ ଅହୁରି ଦୀର୍ଘକାଳ ଜୀବିତ ଓ ଜାଜ୍ଜ୍ୱଲ୍ୟମାନ ରହି ଦେଶବାସୀଙ୍କୁ ତଥା ଯୁବଶକ୍ତିଙ୍କୁ ଆଶୀର୍ବାଦ ଓ ପ୍ରେରଣା ଦେଉଥାନ୍ତୁ, ଈଶ୍ୱରଙ୍କଠାରେ ଏହାହିଁ ନିବେଦନ କରୁଛୁ ।

ଆଜନ୍ମ ବ୍ରହ୍ମଚାରୀ ଜ୍ଞାନୀପ୍ରବର ଭୀଷ୍ମଦେବ ମହାଭାରତ ଯୁଦ୍ଧରେ ଶରବିଦ୍ଧ ହୋଇ ଶରଶଯ୍ୟାରେ ଶାୟିତ ରହିଥିବା ବେଳେ ମହାମନା ବାସୁଦେବ ପ୍ରଶାନ୍ତ ପାବକ ସଦୃଶ ଶରଶଯ୍ୟାରେ ଶାୟିତ ଭୀଷ୍ମଦେବଙ୍କୁ କ୍ଷଣକାଳ ଅବଲୋକନ କରି ଅତି ନମ୍ର ଓ ଧୀର ଭାବରେ ସମ୍ବୋଧନ ପୂର୍ବକ କହିଥିଲେ—"ଶାନ୍ତନୁତନୟ ! ଆପଣଙ୍କର ଜ୍ଞାନରାଶି ପୂର୍ବପରି ପ୍ରଚ୍ଛନ୍ନ ରହିଛି ତ ? ଆପଣଙ୍କର ବୁଦ୍ଧି ତ ପର୍ଯ୍ୟାକୁଳ ହୋଇନାହିଁ ଏବଂ ଶରଘାତ ନିବନ୍ଧନରେ ଆପଣଙ୍କର ଶରୀର ତ ନିତାନ୍ତ ଅବଶ ହୋଇନାହିଁ । ମାନସିକ ଦୁଃଖ ଅପେକ୍ଷା ଶାରୀରିକ ଦୁଃଖ ସମଧିକ ବଳବାନ । ଆପଣଙ୍କର ପିତା ଧର୍ମପରାୟଣ ଶାନ୍ତନୁ ରାଜାଙ୍କ ବର ପ୍ରଭାବରେ ଆପଣ ଏପରି ଇଚ୍ଛା ମୃତ୍ୟୁରେ ଅଧିକାରୀ ହୋଇଛନ୍ତି । ମୁଁ ଆପଣଙ୍କ ଇଚ୍ଛା ମୃତ୍ୟୁର କାରଣ ନୁହେଁ......ଯାହାହେଉ, ଆପଣ ଯେତେବେଳେ ଦେବତାଙ୍କୁ ଉପଦେଶ ପ୍ରଦାନ କରିପାରନ୍ତି, ସେତେବେଳେ ଆପଣ ନିକଟରେ ପ୍ରାଣୀଗଣଙ୍କ ଜନ୍ମମୃତ୍ୟୁ ବିଷୟ କୀର୍ତ୍ତନ କରିବା ନିତ୍ୟାନ୍ତ ଅବିଧେୟ । ଆପଣ ଜ୍ଞାନବୃଦ୍ଧ; ଭୂତ, ଭବିଷ୍ୟତ ଓ ବର୍ତ୍ତମାନ କୌଣସିଟି ଆପଣଙ୍କର ଅବିଦିତ ନୁହେଁ । ଆପଣ ଧର୍ମମୟ । ଆପଣ ପୂର୍ବେ ଏ ବିଶାଳ ଦେଶରେ ସୁସ୍ଥ ଶରୀରରେ ସହସ୍ର ସହସ୍ର ସହସ୍ର ମହିଳାଗଣଙ୍କଦ୍ୱାରା ପରିବୃତ୍ତ ଥାଇ ପରମଯୋଗୀ ବ୍ରହ୍ମଚାରୀ ରୂପେ ଯେପରି ଜୀବନ ଅତିବାହିତ କରିଛନ୍ତି, ତାହା ଏବେ ମଧ୍ୟ ମୋ ଚିତ୍ତରେ ବର୍ତ୍ତମାନ ପରି ଜାଗରୂକ ରହିଛି । ଆପଣ ସତ୍ୟ ଧର୍ମପରାୟଣ ଏବଂ ସେହି ଧର୍ମ ରୂପକ ମହାବଳରେ ପରାକ୍ରାନ୍ତ । ଆପଣ ସତତ ସତ୍ୟ, ଦାନ, ତପସ୍ୟା, ଯଜ୍ଞ, ବେଦ, ନୀତି, ଲୋକରକ୍ଷଣ, ଲୋକସେବା, ସରଳତା, ପବିତ୍ରତା ଓ ପ୍ରାଣୀଗଣଙ୍କ ଦୟାପରତାରେ ହିଁ ତତ୍ପର ରହି ଆସିଛନ୍ତି । ଆପଣଙ୍କ ସଦୃଶ ମହାଜ୍ଞାନୀ ଓ ମହାରଥ ଆଉ କେହି ନାହାନ୍ତି । ......ଆପଣ ସ୍ୱୟଂ ଗୁଣଗ୍ରାମ ପ୍ରଭାବରେ ଦେବଗଣଙ୍କୁ ଅତିକ୍ରମ କରିଛନ୍ତି । ଚତୁର୍ବେଦ, ଚତୁର୍ହୋତ୍ର ଓ ସାଙ୍ଖ୍ୟ ଯୋଗରେ ଯେଉଁ ଯେଉଁ ଧର୍ମକୀର୍ତ୍ତିତ ହୋଇଛି, ତତ୍‌ସମୁଦାୟ ଓ ଚାରିବର୍ଣ୍ଣର ଏବଂ ଚାରି ଆଶ୍ରମର ସନାତନ ଧର୍ମ ଓ ନୀତି ଆପଣଙ୍କୁ ଅବିଦିତ ନୁହେଁ । ବର୍ଣ୍ଣସଙ୍କରମାନଙ୍କରେ, ଦେଶ, ଜାତି ଓ କୁଳର ଧର୍ମଲକ୍ଷଣ ବିଷୟରେ ଆପଣ ବିଲକ୍ଷଣ ଅବଗତ ଅଛନ୍ତି । ବେଦୋକ୍ତ ଧର୍ମ, ଶିଷ୍ଟାଚାର ପ୍ରଣାଳୀ ଏବଂ ଇତିହାସ, ପୁରାଣ ଓ ଧର୍ମଶାସ୍ତ୍ର ଆପଣଙ୍କ ହୃଦୟରେ

ବିଲକ୍ଷଣ ଜାଗରୁକ ରହିଛି । ଇହଲୋକରେ କୌଣସି ବିଷୟରେ ସନ୍ଦେହ ଉପସ୍ଥିତ ହେଲେ ଆପଣଙ୍କ ଭିନ୍ନ ସେଥିର ଭଞ୍ଜନକର୍ତ୍ତା ଆଉ କେହି ନାହିଁ । ଅତଏବ ଆପଣ ପାଣ୍ଡବଶ୍ରେଷ୍ଠ ଯୁଧିଷ୍ଠିରଙ୍କ ହୃଦୟର ଶୋଷକ ଶୋକାବେଗର ଅପନୋଦନ କରନ୍ତୁ ।"

ମହାଭାରତର ସମଗ୍ର ଶାନ୍ତି ପର୍ବରେ ବ୍ରହ୍ମଚାରୀ ଭୀଷ୍ମଦେବଙ୍କ ନିର୍ଦ୍ଦେଶ ଓ ଉପଦେଶ ଯୁଗେ ଯୁଗେ ସନାତନବାଣୀ ରୂପେ ପ୍ରଚାରିତ ଓ ପ୍ରସାରିତ ହୋଇ ରହିଛି । ଶର ଶଯ୍ୟାରେ ଶାୟିତ ବ୍ରହ୍ମଚାରୀ ଭୀଷ୍ମଦେବଙ୍କ ସହିତ ଆଧୁନିକ ଯୁଗରେ କୌଣସି ମାନବର ତୁଳନା କରିବା ଧୃଷ୍ଟତା । କିନ୍ତୁ ଆଧୁନିକ ସମାଜର ଅବସ୍ଥା ଓ ଦେଶର ପରିସ୍ଥିତି ଦୃଷ୍ଟିରୁ ଏ ବକୁଳ ବନର ନୀରବ ସାଧକ ଋଷିପ୍ରାଣ ଆଚାର୍ଯ୍ୟଙ୍କର ଜୀବନବ୍ୟାପୀ ସାଧନା, କଠୋର ବ୍ରହ୍ମଚର୍ଯ୍ୟ ବ୍ରତ, ସତ୍ୟ, ସ୍ନେହ ଓ ସେବାରେ ଜଣେ ଶ୍ରେଷ୍ଠ ସାଧକ ରୂପେ ତାଙ୍କର ଧର୍ମବଳ ଓ ଚରିତ୍ରବଳ ଏବଂ ଆଦର୍ଶକୁ ଆଚରଣରେ ପରିପୂର୍ଣ୍ଣ ଭାବରେ ପ୍ରକଟିତ କରିବାର ପ୍ରୟାସ ତାଙ୍କୁ ଏକ ପ୍ରକାର ଆଧୁନିକ ଯୁଗରେ ଶରଶଯ୍ୟାରେ ଶାୟିତ ଭୀଷ୍ମଦେବଙ୍କ ପରି ନିୟତି ଯେପରି କି ଏପର୍ଯ୍ୟନ୍ତ ପ୍ରତିତ ଓ ପ୍ରାଣବନ୍ତ କରି ରଖିଛି ।

ଆଚାର୍ଯ୍ୟ ଏକାଧାରରେ ଶିକ୍ଷକ, ସେବକ, ସତ୍ୟ' ଶାନ୍ତି ଓ ସରଳତାର ପ୍ରତୀକ, ସର୍ବୋପରି ସ୍ନେହ ଓ ସାଧୁତାର ଉପାସକ ଓ ଦ୍ୟୋତକ ରୂପେ କଠୋର ତ୍ୟାଗ ଓ ସଂଯମ ଭିତରେ ଉତ୍ସର୍ଗୀକୃତ ଏକ ଯୋଗଜନ୍ମା ସାଧକ ପୁରୁଷ ରୂପେ ଏପର୍ଯ୍ୟନ୍ତ ଜୀବନ ଅତିବାହିତ କରି ଆସିଛନ୍ତି । ଯେ ଯେତେ ଜ୍ଞାନୀ ଓ ମହତ୍, ସେ ସେତିକି ନମ୍ର । କୁଳଗୁରୁ ଆଚାର୍ଯ୍ୟଙ୍କଠାରେ ନମ୍ରତା, ସହିଷ୍ଣୁତା ଓ ଶ୍ରଦ୍ଧାପୂର୍ଣ୍ଣ ମାନବିକତା ଯେପରି କି ମୂର୍ତ୍ତିମନ୍ତ ରୂପରେ ଆବିର୍ଭୂତ ହୋଇଛି, ଏହା ହିଁ ମନେହୁଏ । କୁଳଗୁରୁ ଆଚାର୍ଯ୍ୟ ନିତ୍ୟ "ଶ୍ରୀମଦ୍ ଭଗବତ" ଗୀତାର ଦ୍ୱିତୀୟ ଅଧ୍ୟାୟର ୬୯ରୁ ୭୨ ଶ୍ଳୋକକୁ ଯେପରି ଭାବରେ ବ୍ୟାଖ୍ୟାନ କରିଛନ୍ତି, ତାକୁ ବିଚାର କରି ତାଙ୍କର ବର୍ତ୍ତମାନର ଅର୍ଦ୍ଧଶାୟିତ ଅବସ୍ଥା ଦେଖିଲେ ମନେହୁଏ, ଯେପରି କି ସେ ଏହି ଗୀତାଯୋଗରେ ଆତ୍ମପ୍ରକାଶ କରୁଛନ୍ତି—

"ଯା ନିଶା ସର୍ବଭୂତାନାଂ
ତସ୍ୟାଂଜାଗର୍ତ୍ତି ସଂଯମୀ,
ଯସ୍ୟା ଜାଗ୍ରତି ଭୂତାନି
ସା ନିଶା ପଶ୍ୟତୋ ମୁନେଃ ।
ଆପୂର୍ଯ୍ୟମାଣମଚଳପ୍ରତିଷ୍ଠଂ
ସମୁଦ୍ରମାପଃ ପ୍ରବିଶନ୍ତି ଯଦ୍‌ବତ,
ତଦ୍‌ବତ୍ କାମା ଯଂ ପ୍ରବିଶନ୍ତି ସର୍ବେ,
ସ ଶାନ୍ତି ମାପ୍ନୋତି ନ କାମକାମୀ ।
ବିହାୟ କାମାନ୍ ଯଃ ସର୍ବାନ୍
ପୁମାଂଶ୍ଚରନ୍ତି ନିସ୍ପୃହଃ,
ନିର୍ମମୋ ନିରହଂକାରଃ
ସ ଶାନ୍ତିମଧିଗଚ୍ଛତି ।
ଏଷା ବ୍ରାହ୍ମୀସ୍ଥିତିଃ ପାର୍ଥ
ନୈନାଂ ପ୍ରାପ୍ୟ ବିମୁହ୍ୟତି,
ସ୍ଥିତ୍ୱାସ୍ୟାମନ୍ତକାଳେଽପି
ବ୍ରହ୍ମନିର୍ବାଣମୃଚ୍ଛତି ।"

ଅଜ୍ଞାନ ଅନ୍ଧକାରରେ ଆଚ୍ଛନ୍ନ ବ୍ୟକ୍ତିଙ୍କର ଯାହା ନିଶା ପରି ଅପ୍ରକାଶ ଥାଏ, ସେଥିରେ ଜିତେନ୍ଦ୍ରିୟ ବ୍ୟକ୍ତି ଜାଗରିତ ହୁଏ । ଯହିଁରେ ଅଜ୍ଞାନାନ୍ଧ ଜୀବମାନେ ଜାଗରିତ ଥାନ୍ତି, ଆତ୍ମଦର୍ଶୀ ଜିତେନ୍ଦ୍ରିୟ ମୁନିଙ୍କ ପକ୍ଷରେ ତାହା ଅର୍ଥାତ ସେ ବିଷୟନିଷ୍ଠ ଗର୍ତ୍ତପରି ଅପ୍ରକାଶ । ଯେଉଁ ବ୍ୟକ୍ତି ସକଳ ପ୍ରକାର ପ୍ରାପ୍ତ ଭୋଗ୍ୟ ପଦାର୍ଥ ପ୍ରତି ନିଃସ୍ପୃହ ଓ ଅହଙ୍କାର ଶୂନ୍ୟ ହେବାରୁ ଭୋଗ୍ୟ ବିଷୟସମୂହରେ ମମତାଶୂନ୍ୟ ହୋଇ କର୍ତ୍ତବ୍ୟ ସାଧନ କରନ୍ତି, ସେ ଶାନ୍ତି ଲାଭ କରନ୍ତି ।

ସେ ଦୃଷ୍ଟିରୁ ଦେଖିଲେ କୁଳଗୁରୁ ଆଚାର୍ଯ୍ୟ ହରିହର ଆଧୁନିକ ଯୁଗର ଜଣେ ମୁନି । ଦେଶବାସୀଙ୍କ ପ୍ରତି ତାଙ୍କର ବାଣୀ ହେଉଛି, ସେହି ଶ୍ରୀମଦ୍ ଭଗବତ ଗୀତା । ଏହା ଜନ ସମାଜ ଓ ଯୁବସମାଜକୁ ଅନୁପ୍ରାଣିତ କରୁ ।

(ସମାଜ—ସଂପାଦକୀୟ ଫେବୃୟାରୀ ୧୩, ୧୯୭୧)

# ଜନ୍ମସିଦ୍ଧ ହରହର

ଶ୍ରୀ ସଚ୍ଚିଦାନନ୍ଦ ମହାନ୍ତି

୧୮୮୫ ଫାଲ୍‌ଗୁନ କୃଷ୍ଣ ଦ୍ୱିତୀୟା, ଓଡ଼ିଶା ବାସୀଙ୍କ ପକ୍ଷରେ ଗୋଟିଏ ସ୍ମରଣୀୟ ଦିବସ । ସେଦିନ ପୁରୀ ଜିଲ୍ଲା ଶ୍ରୀଗମ ପୁରନିବାସୀ ଶ୍ରୀ ମହାଦେବ ବ୍ରହ୍ମାଙ୍କର ଗୋଟିଏ ପୁତ୍ର ସନ୍ତାନ ଜନ୍ମଲାଭ କଲା । ସେ ସନ୍ତାନଟି ଅଳ୍ପ ବୟସରେ ମାତୃହରା ହୋଇ ନିଜର ଜେଜେମାଙ୍କଦ୍ୱାରା ଲାଳିତପାଳିତ ହୋଇ କ୍ରମେ ବଡ଼ ହେଲା । ଗ୍ରାମ ପାଠଶାଳାରେ ସେ ପାଠ ପଢ଼ିଲା । ଦିନେ ବର୍ଷାଦିନିଆ ଶେଷ ଗତିରେ ତାକୁ ଝାଡ଼ା ଲାଗିଲା । କିଛି ସମୟ ପୂର୍ବରୁ ବର୍ଷା ହୋଇ ଦାଣ୍ଡ ମଝିରେ ପାଣିର ସୁଅ ଛୁଟୁଥାଏ । ଜେଜେମା ଦାଣ୍ଡ ପିଣ୍ଡାରେ ବସି ତାକୁ କହିଲେ—ମୁଁ ଏଇଠି ବସିଛି । ତୁ ଯା, ଦାଣ୍ଡରେ ଝାଡ଼ା ଫେରି ମଝି ଦାଣ୍ଡରେ ବୋହି ଯାଉଥିବା ବର୍ଷା ପାଣିରେ ପାଣି ସାରି ଆସିବୁ ।" ପିଲାଟି ଝାଡ଼ା ଫେରି ସାରି ପାଣି ସାରୁଛି, ହଠାତ୍ ଜଣେ ସଧବା ସ୍ତ୍ରୀଲୋକର କାଚ ଝୁମ୍‌ଝୁମ୍ ତାକୁ ଶୁଭିଲା । ଜେଜେମା 'ଇଲୋ, ମା'ଲୋ !' ବୋଲି ପିଲାର ହାଉଳ ଖାଇବା ଶୁଣିଲେ, ମାତ୍ର ପିଲାକୁ ପାଇଲେ ନାହିଁ । ତହୁଁ ସେ ବିକଳ ହୋଇ ଆରେ ମହାଦେବ ମହାଦେବ !" କହି ଡାକ ପକାଇଲେ । ଏହା ଶୁଣି ତାଙ୍କ ପୁଅ ମହାଦେବ ଦଉଡ଼ି ଆସି ପଚାରିଲେ, "ବୋଉ ! ବୋଉ ! ତୁ କାହିଁକି ବିକଳ ହେଉଛୁ ?" ବୁଢ଼ୀ କାନ୍ଦି କାନ୍ଦି କହିଲେ—"ଆରେ ସତରେ ମୁଁ ପରା ଦାଣ୍ଡ ପିଣ୍ଡାରେ ବସିକରି ତାକୁ ପଠାଇଲି । ସେ ଦାଣ୍ଡକୁ ଝାଡ଼ା ଗଲା, ଝାଡ଼ା ଯାଇସାରି ଦାଣ୍ଡ ମଝିରେ ପାଣି ସାରିଲା ବେଳେ ହଠାତ୍ ଦୁଇଥର 'ଇଲୋ ମାଲୋ !' କହିଲା । ତାପରେ ମୁଁ ଯେତେ ଡାକୁଛି ସେ ଆଉ କାହିଁ ଶୁଣୁ ନାହିଁ ଏବଂ ତାକୁ ଆଉ ପାଉ ନାହିଁ ।"

ଲାଂପ (ଡିବି) ଲଗାହେଲା । ପିଲାଟିକୁ ତା'ର ବାପା, କକେଇ, ଜେଜେମା ଖୋଜିବାକୁ ଲାଗିଲେ । ଦାଣ୍ଡରେ ତା'ର କୌଣସି ସନ୍ଧାନ ମିଳିଲା ନାହିଁ । ସେତେବେଳେ ପଟନାଇକିଆ ଜଙ୍ଗଲରେ ଚିତାବାଘ ରହୁଥିଲେ ଏବଂ ଗାଁକୁ ଆସି ଛେଳି, ମେଣ୍ଢା ନେଇ ଯାଉଥିଲେ । ମଝିରେ ମଝିରେ ଲୋକମାନଙ୍କୁ ମଧ୍ୟ ଆକ୍ରମଣ କରୁଥିଲେ । ମହାଦେବ କହିଲେ—"ବୋଉ ! ବାଘର କୌଣସି ପଂଝା ଚିହ୍ନ କେଉଁଠି ନାହି ବା କେଉଁଠି ଟୋପାଏ ରକ୍ତ ପଡ଼ିଥିବା ଦେଖାଯାଉ ନାହିଁ । ବୋଧ ହୁଏ ପୁଅ କୌଣସି କାରଣରୁ ଡରିଯାଇ ଘର ଭିତରକୁ ପଶି ଯାଇଛି । ତୁ ତାକୁ ଦେଖି ପାରୁନାହୁଁ ।"

ଘର ଭିତରେ ମଧ୍ୟ ଖୋଜା ହେଲା । ଘରେ ଗୋଟିଏ କଣରେ ଡେର ହୋଇଥିବା କେତେକ ମନ୍ଦୁରା (ମସିଣା) ଭିତରେ ପିଲାଟିର ସନ୍ଧାନ ମିଳିଲା । ନିଦାଘ ଖରରେ କାମ କଲେ ଯେପରି ଝାଳ ବହେ, ପିଲାଟି ଦେହରୁ ସେହିପରି ଝାଳ ବୋହି ଯାଉଥାଏ । ତା'ର ଝାଳ ପୋଛିଦେଇ ଶୋଇବାର ବ୍ୟବସ୍ଥା କରି ଦିଆଗଲା । ପିଲାଟି ଶୋଇ ପଡ଼ିଲା ନିଶ୍ଚିନ୍ତରେ । କିନ୍ତୁ ସେହି ଦିନଠାରୁ ତା' ମନ ଭିତରେ ଡରର ସଞ୍ଚାର ହେଲା ।

ସେତେବେଳକୁ ପିଲଟି ୭।୮ ବର୍ଷର ହୋଇଥାଏ । ସନ୍ଧ୍ୟା ପରେ ଅନ୍ଧାରରେ ଉପର ଖଞ୍ଜାକୁ ତଳ ଖଞ୍ଜାକୁ ଯିବାକୁ ମଧ୍ୟ ଡରିଲା । କିଛି ଦିନ ପରେ ଦିନେ ମା' ମହାଦେବକୁ ଡାକି କହିଲେ—"ଆରେ ମହାଦେବ ! ତୋ ପୁଅ ସେହି ଗତିଠୁଁ ଏପରି ଡରକୁଳା ହୋଇଯାଇଛି ଯେ ଗତିରେ ଏ ଖଞ୍ଜାରୁ ସେ ଖଞ୍ଜାକୁ ଯାଉନାହିଁ । କଣ କରିବା ତା ଡର କିପରି ଛାଡ଼ିବ ?" ତେଣୁ ମହାଦେବ ପୁଅକୁ ନିଜ ନଡ଼ିଆ ବାଡ଼ି ଭିତରକୁ ଦିନବେଳା ବୁଲିବାକୁ ଡାକି ନେଇ କଅଁଳେଇ ସଅଁଳେଇ ପଚାରିଲେ—"ତୁ କାହିଁକି ଏତେ ଡରକୁଳା ହୋଇଯାଇଛୁ ।" ପିଲଟି କହିଲା "ଯେଉଁଦିନ ଗତିରେ ଗାଁ ଠାକୁରାଣୀ ହରଚଣ୍ଡୀ ମୋ ପଛଆଡ଼େ ଆସି ଠିଆ ହୋଇ ଗଲେ, ତାଙ୍କ କାଚ ଝମଝମ ଶୁଣି ମୁଁ ଘର ଭିତରକୁ ପଳାଇଗଲି । ସେହିଦିନଠାରୁ ଅନ୍ଧାର ହେବା ମାତ୍ରେ ମୋର ସେ କଥା ମନେ ପଡ଼ି ଯାଉଛି ।" ବାପା କହିଲେ—"ନା, ତୁ ଭୁଲ ବୁଝିଛୁ । ତୁ ଯେତେବେଳେ ଝାଡା ଯାଇଥିଲୁ ତାହା ତ ଭୋର, ସମୟ । ସାଧାରଣତଃ ଗାଁର ନୂଆ ଭୁଆଷୁଣୀମାନେ ଦିନବେଳା ଦାଣ୍ଡକୁ ବାହାରି ପାରନ୍ତି ନାହିଁ । ଏତିକିବେଳେ ଉଠି ଦାଣ୍ଡଦ୍ୱାର ଲିପାପୋଛା କରନ୍ତି । ସେ ଶବ୍ଦ ଆମ ପଡ଼ିଶା ଘରର ବୋହୂ ଲିପୁଥିବା ବେଳେ ତା' ହାତ କାଚର ଶବ୍ଦ ହୋଇଥିବ । ନାହିଁ ତ ଯଦି ପ୍ରକୃତରେ ମା ଗ୍ରାମଦେବତୀ ହରଚଣ୍ଡୀ ଆସିଥିବେ, ତେବେ ତାଙ୍କୁ ଡରିବାର କାରଣ କ'ଣ ? ସେ ତ ଜଗତର ମା' । ମା'କୁ କଣ ପିଲାଏ ଡରନ୍ତି ? ତେବେ ତୁ ଗୋଟିଏ କାମ କର । ପ୍ରତିଦିନ ସକାଳେ କିମ୍ବା ସଂଜବେଳେ ମା'ଙ୍କ ପାଖକୁ ଯାଇ ମୁଣ୍ଡିଆ ମାରି ଆସିବୁ । ତୋର ଡର ଛାଡ଼ିଯିବ ।

ବାପାଙ୍କ କହିବା ଅନୁସାରେ ପିଲଟି ପ୍ରତିଦିନ ମା' ହରଚଣ୍ଡୀଙ୍କୁ ମୁଣ୍ଡିଆ ମାରିବାକୁ ଯାଏ । ଗାଁରେ ରହୁଥିବା ବେଳେ ଏ ଅଭ୍ୟାସ ତା'ର କେବେ ଛାଡ଼ ଯାଇ ନ ଥିଲା । ସତକୁ ସତ ତାର ଡରକୁଳାପଣ ମଧ୍ୟ ଛାଡ଼ିଗଲା ।

କ୍ରମେ ପିଲଟି ବଡ଼ ହୋଇ ଗାଁ ସ୍କୁଲର ପାଠପଢ଼ା ଶେଷ କରି ବୃତ୍ତି ପାଇ ପୁରୀ ଜିଲା ସ୍କୁଲରେ ପଢ଼ିଲା । ୧୯୦୧ ମସିହାରେ ମାଟ୍ରିକ ପାଶ୍ କରି କଟକର ରେଭେନ୍ସା କଲେଜରେ ପଢ଼ିଲା । ସେତେବେଳେ ରେଭେନସା କଲେଜ କଟକର କାଠଯୋଡ଼ି କୂଳରେ ଥାଏ । ଏବେ ସେ କୋଠାରେ କଲେଜିଏଟ୍ ସ୍କୁଲ ହେଉଛି । ସମ୍ବଲପୁରରୁ ଓ ଓଡ଼ିଶାର ଗଡ଼ଜାତରୁ ପିଲାମାନେ ଏହି ଏକମାତ୍ର କଲେଜରେ ପଢ଼ୁଥିଲେ । ସମ୍ବଲପୁରର 'ପୂଜାରୀ' ପରିବାରର ପିଲା ଏହି ଯୁବକକୁ କହିଲେ—"ହଇ ହୋ ପୁରୀଆ, ତମକୁ ପହଁରି ଆସେ ?" ଉତ୍ତର ପାଇଲେ—"ମୁଁ ତ ସମୁଦ୍ରରେ ପହଁରେ, ମୋତେ ଏ ନଈ ପହଁରା କଣ ଦେଖଉଛ ?"

କାଠଯୋଡ଼ିରେ ପ୍ରବଳ ବନ୍ୟା । ଗଣେଶ ପୂଜା ପରଦିନ । ମୂର୍ତ୍ତି ବିସର୍ଜନ ହେବ । ସମ୍ବଲପୁରର ପିଲାଏ ଓ ଏ ଯୁବକ ଗୋଟିଏ ଡଙ୍ଗାରେ ମୂର୍ତ୍ତି ନେଇ ନଈ ମଝିକି ଗଲେ । ମୂର୍ତ୍ତିକୁ ପାଣିରେ ପକାଇ ଦେଇ ଡଙ୍ଗାରୁ ଡେଇଁ ପଡ଼ିଲେ । ପହଁରିବା ପ୍ରତିଯୋଗିତା ଆରମ୍ଭ ହୋଇଗଲା । ସମ୍ବଲପୁର ସାଥୀମାନେ କୂଳକୁ ଫେରି ଆସିଲେ । ମାତ୍ର ପୁରୀଆ ଯୁବକ ଗୋଟିଏ ପାଣି ଭଉଁରୀରେ ପଡ଼ିଯାଇ ବୁଡ଼ିଗଲା । ଯେଉଁପରି ଅବସ୍ଥାରେ ସେ ବୁଡ଼ିଗଲା, ସେଥିରୁ ବର୍ଞ୍ଚିବାର ଆଶା ତାର ବିଲକୁଲ ନ ଥିଲା । ବୁଡ଼ିଗଲା ବେଳେ ସେ ମା ହରଚଣ୍ଡୀ, ମା ହରଚଣ୍ଡୀ ବୋଲି ଡାକି-ଥିଲା । ସେହି ଅଥଳ ପାଣି ମଧ୍ୟରେ ଜଣେ ସୁଗଠିତା ସୁନ୍ଦରୀ ଗୌରବର୍ଣ୍ଣା ମହିଳା ନାଲିରଙ୍ଗର ଶାଢ଼ୀ ପିନ୍ଧି ଦେଖା ଦେଇଥିଲେ ଓ ତାଙ୍କୁ କୋଳ କରି ଗଭୀର ଜଳରୁ ଆଣି କୂଳରେ ଥିବା ବୁରୁଜ ପାଖରେ ଛାଡ଼ି ଦେଇଥିଲେ । କେତେ ସମୟ ପରେ ଯୁବକ ବୁରୁଜ ଉପରକୁ ଉଠିଲେ । ସେ ପୂରା ହାଲିଆ ହୋଇ ପଡ଼ିଥିଲେ ।

ରୁଣ୍ଡ ହୋଇଥିବା ସହପାଠୀମାନେ କହିଲେ—"ଆରେ ଏ ପୁରୀଆ ତ ବହୁତ ସମୟ ଧରି ପହଁରିବା ସଙ୍ଗେ ସଙ୍ଗେ ବହୁ ଦୂର ପାଣିରେ ବୁଡ଼ି କରି ଯାଇ ପାରୁଛି । କିନ୍ତୁ ଅସଲ କଥାଟି ହୁଏତ ସେତେବେଳେ

କେହି ଜାଣିଲେ ନାହିଁ । ବହୁ ବର୍ଷ ପରେ ଉକ୍ତ ଘଟଣା ଆଗ୍ରୟ ମହାଶୟ ଲେଖକଙ୍କୁ ଯେ କେବଳ କହିଛନ୍ତି ତାହା ନୁହେଁ । ଶ୍ରୀଯୁକ୍ତା ରମା ଦେବୀ ପ୍ରଭୃତି ବହୁ ସହକର୍ମୀଙ୍କୁ କହିଛନ୍ତି । ଏହିପରି ବହୁ ଲୋକେ ବହୁ ଘଟଣା ତାଙ୍କ ବିଷୟରେ ଜାଣନ୍ତି । ମୋ ପାଖିରେ ତାଙ୍କ ବିଷୟରେ ଅନେକ ଘଟଣା ଲେଖାଅଛି । ସେସବୁ ଆସ୍ତେ ଆସ୍ତେ ପ୍ରକାଶ ପାଇବ ।

ମୋର ଆଶା ଓ ବିଶ୍ୱାସ ଆଗ୍ରୟ ମହାଶୟଙ୍କ ବିଷୟରେ ସବୁ ଘଟଣା ପ୍ରକାଶିତ ହେଲେ ଆମ ପରବର୍ତ୍ତୀ ପୁରୁଷମାନେ ଆଶ୍ଚର୍ଯ୍ୟ ହୋଇ କହିବେ—"ଆରେ ! ଆମ ପୂର୍ବପୁରୁଷମାନେ କେଡ଼େ ଅଯୋଗ୍ୟ ଥିଲେ ! ଆଗ୍ରୟ ମହାଶୟଙ୍କ ସହିତ ଏତେ ମିଶିଲେ, ତାଙ୍କୁ ଠିକ୍ ଠିକ୍ ଜାଣି ପାରିଲେ ନାହିଁ । ଯଦି ଅନ୍ତତଃ ଶହେ ଜଣ ତାଙ୍କ ଆଦର୍ଶରେ ନିଜକୁ ଗଢ଼ିବାର ସଂକଳ୍ପ ଆଜି ତାଙ୍କର ଜନ୍ମଦିନରେ ନିଅନ୍ତେ, ତାହେଲେ ତାଙ୍କର ପ୍ରକୃତ ସ୍ମୃତିପୂଜା ହୁଅନ୍ତା ।

(ପୂର୍ବରୁ "ସମାଜ"ରେ ପ୍ରକାଶିତ)

# ଆଚାର୍ଯ୍ୟ ହରିହର ଦାସଙ୍କର କାଳାନୁକ୍ରମିକ ଜୀବନଧାରା

୧୮୭୮ : ୧୧୮୫ ସାଲ ଫାଲଗୁନ କୃଷ୍ଣ ଦ୍ୱିତୀୟାରେ ପୁରୀ ଜିଲ୍ଲା ଶ୍ରୀରାମଚନ୍ଦ୍ରପୁର ଗ୍ରାମରେ ଜନ୍ମ ।

**ଜନ୍ମ ତାରିଖ ଫେବୃୟାରୀ ୧୨ ।**

୧୮୮୩ : ମାତାଙ୍କର ପରଲୋକ । ଏହି ସମୟରେ ଗ୍ରାମର ଭର୍ଣ୍ଣାକୁଲାର ସ୍କୁଲରେ ଶିକ୍ଷା । ସ୍କୁଲ ପାଠ ସଙ୍ଗେ ସଙ୍ଗେ ସଂସ୍କୃତ ବିଦ୍ୟାଳୟରେ ସଂସ୍କୃତ ଶିକ୍ଷା ।

୧୮୮୭ : ଭର୍ଣ୍ଣାକୁଲାର ସ୍କୁଲରୁ ବୃତ୍ତି ଲାଭ କରି ପୁରୀ ଜିଲ୍ଲା ସ୍କୁଲରେ ଅଧ୍ୟୟନ । ୪ର୍ଥ ଶ୍ରେଣୀରୁ ୬ମାସ ମଧ୍ୟରେ ପଞ୍ଚମଶ୍ରେଣୀ ଓ ଆଉ ଏକ ବର୍ଷ ମଧ୍ୟରେ ୭ମ ଶ୍ରେଣୀକୁ ଉତ୍ତୀର୍ଣ୍ଣ ।

୧୯୦୧ : ପୁରୀ ଜିଲା ସ୍କୁଲରୁ ବୃତ୍ତିସହ ମ୍ୟାଟ୍ରିକୁଲେସନ ପାସ ଓ ରେଭେନ୍ସା କଲେଜ ଏଫ୍ ଏ ଶ୍ରେଣୀରେ ଯୋଗଦାନ । ଏହି ସମୟରେ ଆହାଦ୍ ସାହେବଙ୍କ ଘରେଇ ଶିକ୍ଷକ ଭାବରେ ଅର୍ଥ ଉପାର୍ଜନ କରି କଲେଜ ଶିକ୍ଷା ସମାପନ କଲେ ।

୧୯୦୪ : ରେଭେନ୍ସା କଲେଜରୁ ଏଫ୍. ଏ. ପାସ କରି କଟକରେ ବି. ଏଲ କ୍ଲାସରେ ନାମ ଲେଖାଇଲେ ଓ କିଛିଦିନ ପରେ କଲିକତାରେ ଆଇନ୍ ପଢିଲେ । କିନ୍ତୁ ଶେଷ ପରୀକ୍ଷା ଦେବା ପୂର୍ବରୁ ଆଇନ ଅଧ୍ୟୟନ ତ୍ୟାଗ କରି ପୁରୀ ଫେରି ଆସିଲେ ଓ ପୁରୀ ଜିଲ୍ଲା ସ୍କୁଲରେ କିଛି ଦିନ ପାଇଁ ଶିକ୍ଷକତା କଲେ ।

ପରେ ନୀଳଗିରି ହାଇସ୍କୁଲରେ ପ୍ରାୟ ୨୳ ବର୍ଷ ଶିକ୍ଷକ ଭାବରେ କାର୍ଯ୍ୟ କଲେ । ଏହି ସମୟରେ ଜଣେ ହରିଜନର ଶବକୁ ଦାହ କରିବାକୁ ନେଇ ଚାଞ୍ଚଲ୍ୟ ସୃଷ୍ଟି କରିଥିଲେ ।

୧୯୦୭ : ନୀଳଗିରି ସ୍କୁଲରୁ ଆସି କଟକ ମିଶାନ ସ୍କୁଲରେ କିଛିଦିନ ଶିକ୍ଷକତା କରିବା ପରେ କଟକ ପି.ଏମ୍. ଏକାଡେମୀରେ ପାଞ୍ଚବର୍ଷ ଶିକ୍ଷକତା କଲେ ।

ଏହି ସମୟରେ କବିରାଜ ଶ୍ରୀ ବାଲୁକେଶ୍ୱର ଆଚାର୍ଯ୍ୟ ଓ ଶ୍ରୀ ଲକ୍ଷ୍ମଣ ମିଶ୍ରଙ୍କ ସହ ହଇଜା ରୋଗୀଙ୍କର ସେବାପାଇଁ ଗୋଟିଏ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଗଢ଼ିଲେ ।

୧୯୧୨ : ୧୯୦୯ ମସିହାରୁ ବକୁଳବନରେ ଥିବା ମଧ୍ୟ ଇଂରାଜୀ ବିଦ୍ୟାଳୟ ପଣ୍ଡିତ ଗୋପବନ୍ଧୁଙ୍କ ନେତୃତ୍ୱରେ ହାଇସ୍କୁଲରେ ପରିଣତ ହୋଇଥାଏ । ସେଠାରେ ଆଚାର୍ଯ୍ୟ ହରିହର ଶିକ୍ଷକ ଭାବରେ ଯୋଗଦାନ କଲେ । ସେଠାରେ ସେ ଛାତ୍ରାବାସର ଅଧ୍ୟକ୍ଷ ହେଲେ ଓ ତାଙ୍କୁ 'ଆଚାର୍ଯ୍ୟ' କୁହାଗଲା । ସେହିଦିନରୁ ସେ "ଆଚାର୍ଯ୍ୟ ହରିହର" ନାମରେ ପରିଚିତ ହେଲେ ।

୧୯୨୧ : ସତ୍ୟବାଦୀ ହାଇସ୍କୁଲ ଜାତୀୟ ବିଦ୍ୟାଳୟରେ ପରିଣତ ହେଲା ଓ ଆଚାର୍ଯ୍ୟ ହରିହର ସେଠାରେ ଶିକ୍ଷକ ଭାବରେ ଯୋଗ ଦେଲେ ।

୧୯୨୨ : ଜୁନ୍ ୧୦ ତାରିଖ "ସମାଜ"ର ସଂପାଦକ ଦାୟିତ୍ୱ ନେଲେ ଓ ପୁରୀ ଜିଲ୍ଲା ବୋର୍ଡର ସଭ୍ୟ ନିର୍ବାଚିତ ହେଲେ ।

୧୯୨୪ : ପୁରୀରେ ବିଧବାଶ୍ରମ ପ୍ରତିଷ୍ଠା ହେଲା । ଜାତୀୟ ବିଦ୍ୟାଳୟର ଶିକ୍ଷକତା ତ୍ୟାଗ କରି ସେ ବିଧବାଶ୍ରମର ପରିଚାଳକ ହେଲେ ।

୧୯୨୮ : କଟକ ସ୍ୱରାଜ୍ୟ ଆଶ୍ରମରେ ଯୋଗଦାନ ।

୧୯୨୯ : କେନ୍ଦ୍ରାପଡ଼ାରେ ଅନୁଷ୍ଠିତ କଟକ ରାଜନୈତିକ ସମ୍ମେଳନର ସଭାପତି ।

୧୯୩୦ : ଲବଣ ସତ୍ୟାଗ୍ରହରେ ଯୋଗ ଦେଇ କଟକରୁ ଚାଲି ଚାଲି ଯାଇ ଇଞ୍ଚୁଡ଼ିଠାରେ ଲବଣ ଆଇନ ଭଙ୍ଗ କରିବାରେ ନେତୃତ୍ୱ ନେଇ ଏପ୍ରିଲ ୧୩ ତାରିଖରେ ଗିରଫ ହେଲେ ଓ ହଜାରୀବାଗ ଜେଲରେ ରହିଲେ ।

୧୯୩୧ : ଗାନ୍ଧୀ ଇରଉଇନ ଚୁକ୍ତି ଫଳରେ ଜେଲ୍‌ରୁ ମୁକ୍ତ ହେଲେ । ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ସଭାପତି ଓ ଏ. ଆଇ. ସି.ର ସଭ୍ୟ ନିର୍ବାଚିତ ।

୧୯୩୧-୩୩ ଅସହଯୋଗ ଆନ୍ଦୋଳନରେ ଯୋଗଦାନ ଓ କାରାବରଣ ।

୧୯୩୪ : ଜେଲ୍‌ରୁ ଖଲାସ ହୋଇ ଯାଜପୁର ସବ୍‌ଡ଼ିଭିଜନରେ ପୁରୁଷୋତ୍ତମପୁରଠାରେ ଗାନ୍ଧିଜୀଙ୍କ ହରିଜନ ପଦଯାତ୍ରା ଆନ୍ଦୋଳନରେ ଯୋଗଦାନ । ହରିଜନ ସେବକ ସଂଘ ଓ ଉତ୍କଳ ମୌଳିକ ଶିକ୍ଷା ପରିଷଦର ସଭାପତି । "ବ୍ୟକ୍ତିଗତ-ସତ୍ୟାଗ୍ରହ"ରେ ଯୋଗ ଦେଇ କାରାବରଣ ।

୧୯୩୭ : ବନ୍ୟା ବିପନ୍ନ ଅଞ୍ଚଳରେ ସାହାଯ୍ୟ କାର୍ଯ୍ୟକର୍ମରେ ନେତୃତ୍ୱ ନେଲେ ।

୧୯୩୮ : ଗାନ୍ଧୀ ସେବା ସଂଘ ଡେଲାଙ୍ଗ ସମ୍ମିଳନୀରେ ମୁଖ୍ୟ ଅଂଶ ଗ୍ରହଣ ।

୧୯୪୨ : "ଭାରତ ଛାଡ଼" ଆନ୍ଦୋଳନରେ ଯୋଗ ଦେଇ ବନ୍ଦୀ ଭାବରେ ବ୍ରହ୍ମପୁର ଜେଲରେ ଦୁଇବର୍ଷ ରହିଲେ । ଏଠାରେ ଅନ୍ୟାନ୍ୟ ରାଜନୈତିକ କର୍ମୀମାନଙ୍କୁ ଗୀତା ଓ ଉପନିଷଦ ପଢ଼ାଉଥିଲେ ଓ ସୂତା କାଟିବା ସଙ୍ଗେ ସଙ୍ଗେ ଅଟା ପେଷିବା ଓ ତିରିଶ ପଞ୍ଚତିରିଶ ବନ୍ଦୀଙ୍କ ପାଇଁ ରୁଟି ସେକିବା କାର୍ଯ୍ୟ କରୁଥିଲେ ।

୧୯୪୪ : କାରାଗାରରୁ ମୁକ୍ତ ହୋଇ ପ୍ରାଦେଶିକ କଂଗ୍ରେସ କମିଟିର ସଭ୍ୟ ହେଲେ । ୧୯୫୨ ପର୍ଯ୍ୟନ୍ତ ସେ କମିଟି ସଭ୍ୟ ଥିଲେ ।

୧୯୫୦ : ଅନୁଗୁଳଠାରେ ଅନୁଷ୍ଠିତ ସର୍ବୋଦୟ ସମ୍ମିଳନୀର ମୁଖ୍ୟ ପରିଚାଳକ ଥିଲେ ।

୧୯୫୨ : ଭୂଦାନ ଆନ୍ଦୋଳନରେ ଯୋଗଦାନ ଓ ଓ ୫୦୦୦ରୁ ଅଧିକ ମାଇଲ ପଦଯାତ୍ରା କରି ଗାନ୍ଧୀ ବିନୋବା ବାଣୀ ପ୍ରଚାର ।

୧୯୫୫ : ପୁରୀ ସର୍ବୋଦୟ ସମ୍ମିଳନୀର ପରିଚାଳକ ।

୧୯୫୮ : ଅଗଷ୍ଟ ୧୫ ତାରିଖରୁ ବାଲେଶ୍ୱରଠାରୁ ଐତିହାସିକ ପଦଯାତ୍ରା ଆରମ୍ଭ କଲେ । ଏପ୍ରିଲ ୨୯ରୁ ମୟୂରଭଞ୍ଜଠାରୁ ଦ୍ୱିତୀୟବାର ପଦଯାତ୍ରା ଆରମ୍ଭ କଲେ ।

୧୯୬୦ : ଓ୍ୟାର୍ଦ୍ଧାଠାରେ ନିଖିଳ ଭାରତ ସର୍ବୋଦୟ ସମ୍ମିଳନୀରେ ସଭାପତିତ୍ୱ କଲେ । ବ୍ରହ୍ମପୁର ପ୍ରାଦେଶିକ ସର୍ବୋଦୟ ସମ୍ମିଳନୀରେ ଅଂଶ ଗ୍ରହଣ ।

୧୯୬୧ : ଚକ୍ଷୁରୋଗରେ ପୀଡ଼ିତ ହେବାରୁ ଡକ୍ଟର ବଳଭଦ୍ର ପ୍ରସାଦଙ୍କ ସହାୟତାରେ ପାଟନା ଠାରେ ଆଖି ଅପରେସନ୍ ।

ନଭେମ୍ବର ୧୪ ତାରିଖରେ ଆହ୍ଲାବାଦ ବିଶ୍ୱବିଦ୍ୟାଳୟ ଛାତ୍ର ସଂଘର ବାର୍ଷିକ ଉତ୍ସବରେ ମୁଖ୍ୟବକ୍ତା ଭାବରେ ଯୋଗଦାନ ।

୧୯୬୩ : ସତ୍ୟବାଦୀରେ ମହାବିଦ୍ୟାଳୟ ପ୍ରତିଷ୍ଠା ପାଇଁ ହୋଇଥିବା ସଭାରେ ସଭାପତିତ୍ୱ ଓ ସତ୍ୟବାଦୀ ମହାବିଦ୍ୟାଳୟ ପରିଚାଳକ କମିଟିର ସଭାପତି ଭାବରେ ରହିଲେ ।

୧୯୬୪ : ସ୍ୱରାଷ୍ଟ୍ରମନ୍ତ୍ରୀ ଶ୍ରୀ ଗୁଲଜାରୀଲାଲ ନନ୍ଦାଙ୍କ ଅନୁରୋଧରେ ଐତିହାସିକ ଛାତ୍ର ଆନ୍ଦୋଳନର ସମାଧାନ ପାଇଁ ନେତୃତ୍ୱ ନେଲେ ଓ ଛାତ୍ର ଆନ୍ଦୋଳନ ପ୍ରତ୍ୟାହୃତ ହେଲା ।

୧୯୭୧ : ସମ୍ପୂର୍ଣ୍ଣ ବିଶ୍ରାମ ନେଇ ପୁରୀରେ ରହିଲେ ।

**୧୯୭୧ ଫେବୃୟାରୀ ୨୧** ତାରିଖରେ **ଇହଲୀଳା** ସାଙ୍ଗ ।

# ଦେଶପ୍ରାଣ ଆଚାର୍ଯ୍ୟ ହରିହର

ଇ. ମଧୁସୂଦନ ଦାଶ

ବିଂଶ ଶତାବ୍ଦୀର ଆରମ୍ଭରେ ଦେଶ ଯେତେବେଳେ ଅଜ୍ଞାନ ଅନ୍ଧକାରରେ ଆଛନ୍ନ ହୋଇ ରହିଥିଲା, ମ୍ୟାଲେରିଆ, ହଇଜା, ବସନ୍ତ ପ୍ରଭୃତିରେ ଲୋକେ ଚିକିତ୍ସା ଅଭାବରେ କୁଢ କୁଢ ହୋଇ ପୋକ ମାଛି ପରି ମରି ଯାଉଥିଲେ, ସେତେବେଳର ଗୋଟିଏ ସାମାନ୍ୟ ଘଟଣାରୁ ଓଡ଼ିଶାର ଭାଗ୍ୟାକାଶରେ ଦେଖା ଦେଇଥିଲେ, ଏ ଯୁଗର ପଞ୍ଚସଖା, ଯେଉଁମାନେ ଏ ସବୁ ଦୂର କରିବାକୁ ଜୀବନର ବ୍ରତ ରୂପେ ଗ୍ରହଣ କରିଥିଲେ ଓ ସେଥିରେ ବହୁଭାବରେ ସମର୍ଥ ହୋଇଥିଲେ ।

ସେଇ ଘଟଣାଟି ହେଲା—୧୯୦୨ ମସିହାର ଗ୍ରୀଷ୍ମାବକାଶରେ ଦିନେ ସକାଳେ ସାକ୍ଷୀଗୋପାଳ ନିକଟସ୍ଥ ଶ୍ରୀରାମଚନ୍ଦ୍ରପୁର ଗ୍ରାମର ୩ଜଣ ଯୁବକ ହରିହର ଦାସ, ନୀଳକଣ୍ଠ ଦାସ ଓ ଅନନ୍ତ ମିଶ୍ର ବାହାରିଲେ ଦେଶପ୍ରାଣ ଯୁବକ ଗୋପବନ୍ଧୁ ଦାସଙ୍କ ପାଖକୁ । ପାଞ୍ଚମାଇଲ ବାଟ ଯାଇ ଗୋପବନ୍ଧୁ ବାବୁଙ୍କୁ ଦେଖିଲେ, ଗାଁ ମୁଣ୍ଡ ଠାକୁରାଣୀଙ୍କ ପାଖରେ 'ସପ୍ତା'ରେ ବସି 'ଭାଗବତ' ପଢୁଛନ୍ତି । 'ସପ୍ତା' ବୋଇଲେ ଦିନକୁ ଥରେ ମାତ୍ର ହବିଷ୍ୟାନ୍ନ ଖାଇ ଜଗନ୍ନାଥ ଦାସଙ୍କ ଦ୍ୱାଦଶସ୍କନ୍ଧ ଯାଏଁ ସମସ୍ତ 'ଭାଗବତ' ପାରାୟଣ କରିବା. ସେଦିନ ଭାଗବତ ବୋଲା ସରିଲା । ଯଥାରୀତି 'ଭାଗବତ'କୁ ଭାତ, ଡାଲମା ପ୍ରଭୃତି ଭୋଗ ଦିଆଗଲା ଓ ସମସ୍ତଙ୍କ ସଙ୍ଗେ ବ୍ରାହ୍ମଣ ଯୁବକମାନେ ବିନା ଚଳୁରେ ପ୍ରସାଦ ଖାଇଲେ । ସନ୍ଧ୍ୟା ହୋଇ ଆସିଲା—ଏଇ ଚାରିଜଣ ଯୁବକ ଦେବୀ ମନ୍ଦିର ପାଖ ଭାର୍ଗବୀ ନଦୀ ଶଯ୍ୟାରେ ବାଲୁକାରାଶି ଉପରେ ଖଣ୍ଡିଏ ଚାଞ୍ଚ ପକାଇ ବସି ନାନା ଆଲୋଚନାରେ ଲାଗିଲେ । ଏମାନେ ଯେଉଁଠାରେ ବସିଥିଲେ ଠିକ ସେଇ ସିଧାରେ ନଦୀ ଆରକୂଳରେ ଶ୍ମଶାନ । ସେତେବେଳେ ସେ ଅଞ୍ଚଳରେ ଭାରି ହଇଜା ଲାଗିଥାଏ । ଏତେ ଲୋକ ମରି ଯାଉଥାନ୍ତି ଯେ ଲୋକେ ପୁରା ଶବସତ୍କାର କରି ପାରୁ ନ ଥାନ୍ତି । କେହି କେହି ଶବ ମୁହଁରେ ନିଆଁ ଟିକିଏ ଲଗାଇ ଚାଲି ଯାଉଥାନ୍ତି ତ ଅନ୍ୟମାନେ ଦରପୋଡ଼ା କରି ପକାଇଦେଇ ଯାଉଥାନ୍ତି । ଆର ପାଖ ଶ୍ମଶାନରେ ଏଇ ଯେଉଁ ମଡ଼ାମାନ ପଡ଼ିଥାନ୍ତି, ବିଲୁଆ,କୁକୁର ବିକଟାଳ ଶବ୍ଦ କରି ତାକୁ ସବୁ ଟାଣି ଓଟାରି ଖାଉଥାନ୍ତି । ଏ ସବୁ ଦେଖି ଏ ଯୁବକ ମାନଙ୍କ ହୃଦୟ ଫାଟିଯାଉଥାଏ—କ'ଣ କରାଯାଇ ପାରିବ, ବିଚାରି ଠିକ୍ କରିପାରୁ ନ ଥାନ୍ତି । ଆଲୋଚନାରେ ରାତି ପାହି ଆସିଲା । ଗୋପବନ୍ଧୁ ବିକଳ ହୋଇ ପଡୁଥାନ୍ତି । ଦେଶର ଏ ଦୁରବସ୍ଥାର ଅବସାନ ଲାଗି ଆମେ କ'ଣ କିଛି କରି ପାରିବା ନାହିଁ ? ଅବଶେଷରେ ଗୋପବନ୍ଧୁଙ୍କ ସଙ୍ଗେ ନୀଳକଣ୍ଠ, ହରିହର, ଅନନ୍ତ ମିଶ୍ର ମିଶି ଶପଥ ନେଇଥିଲେ—ଆମେ ପାଠ ପଢି ସରକାରୀ ଚାକିରୀ କରିବା ନାହିଁ । ଦେଶପାଇଁ କିଛି କାମ କରିବା । ଜନ୍ମବେଳେ ଦେଶକୁ ଯାହା ଦେଖି ଥାଇଁ ତାହାଠାରୁ ଉନ୍ନତ ଦେଖି ମରିବା ।"

ଏହା ପରର ଘଟଣା—ସମସ୍ତେ ଉଚ୍ଚଶିକ୍ଷା ପାଇଲେ—ସରକାରୀ ଚାକିରୀର ଲୋଭ ସମ୍ବରଣ କଲେ । ଚିନ୍ତାକଲେ ଦେଶକୁ ଉନ୍ନତ କରିବାକୁ ହେଲେ ପ୍ରଥମେ ଲୋଡ଼ା ଅସଲ ମଣିଷ (Real men) ସତ୍ୟବାଦୀରେ ବନବିଦ୍ୟାଳୟ ପ୍ରତିଷ୍ଠିତ ହେଲା । 'ମଣିଷ ଗଢ଼ା' କାରଖାନା ତିଆରି ହେଲା ବହୁ 'ମଣିଷ' ଗଢ଼ା ହେଲେ । ଏବେ ମଧ୍ୟ ସେ ମଣିଷମାନେ ଯିଏ ଯେଉଁ ଅଞ୍ଚଳରେ ବା ବିଭାଗରେ ଥାଆନ୍ତୁ ନା କାହିଁକି, ସେମାନେ ବାରି ହୋଇ ପଡ଼ନ୍ତି । ସେମାନଙ୍କର

ଆଚାର ବ୍ୟବହାର, ଚାଲିଚଳନ, ରୀତିନୀତି ସାଧାରଣ ମଣିଷଙ୍କଠାରୁ ସ୍ୱତନ୍ତ୍ର ଧରଣର । ସେ ଦିନ ପଣ୍ଡିତ ନୀଳକଣ୍ଠଙ୍କ ଶତବାର୍ଷିକୀ ଉତ୍ସବର ଦ୍ୱିତୀୟ ଦିବସ ସଭାରେ ମୁଖ୍ୟ ଅତିଥି ରୂପେ ଯୋଗଦେଇ ପୂର୍ବତନ ରାଜ୍ୟପାଳ ଶ୍ରୀଯୁକ୍ତ ସି, ଏମ୍, ପୁନାଚ୍ଛ ଏ କଥା ବିଶେଷ ଭାବରେ ଉଲ୍ଲେଖ କରିଥିଲେ ଓ ଏହିଠାରୁ ହିଁ ଆଦର୍ଶର ଉଦ୍‌ଭବ ହୋଇଥିଲା ବୋଲି ମତ ଦେଇଥିଲେ ।

ପର ପର୍ଯ୍ୟାୟରେ ଏଇମାନେ ଭାରତର ସ୍ୱାଧୀନତା ସଂଗ୍ରାମରେ ଝାସ ଦେଲେ—ପଣ୍ଡିତ ଗୋପବନ୍ଧୁ ଜନ ଜାଗରଣ ସୃଷ୍ଟି କରି, ବନ୍ୟା, ମରୁଡ଼ି, ଦୁର୍ଭିକ୍ଷ ପ୍ରପୀଡ଼ିତଙ୍କ ସାହାଯ୍ୟ, କଂଗ୍ରେସ ସଂଗଠନ, ଅସହଯୋଗ ଆନ୍ଦୋଳନ ପ୍ରଭୃତି ଦେଶ ହିତକର କାର୍ଯ୍ୟ କରି ମାତ୍ର ୫୨ ବର୍ଷ ବୟସରେ ପ୍ରାଣତ୍ୟାଗ କଲେ । ତାଙ୍କ ପରେ ଆଚାର୍ଯ୍ୟ ମହାଶୟ କିଛି କାଳ ପାଇଁ 'ସମାଜ'ର ସଂପାଦକ ହେଲେ—ଓଡ଼ିଶାରେ ଲବଣ ସତ୍ୟାଗ୍ରହର ପ୍ରଥମ ସୈନିକ ହୋଇ କାରାବରଣ କଲେ । ରାଜନୀତିର ଘଡ଼ିସନ୍ଧି ସମୟରେ ତାଙ୍କୁ ପ୍ରଦେଶ କଂଗ୍ରେସ କମିଟିର ସଭାପତି କରାଗଲା । ଦେଶ ସ୍ୱାଧୀନ ହେଲା । ପଞ୍ଚସଖାଙ୍କ ଭିତରୁ କୃପାସିନ୍ଧୁ ବହୁ ପୂର୍ବରୁ ୧୯୨୬ ମସିହାରେ ମୃତ୍ୟୁ ବରଣ କରିଥିଲେ । ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ ସକ୍ରିୟ ରାଜନୀତିରେ ବିଶିଷ୍ଟ ଅଂଶ ଗ୍ରହଣ କରି ଓଡ଼ିଶା ପ୍ରଦେଶ ଗଠନ ଠାରୁ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପ୍ରଭୃତି ରାଜ୍ୟର ନାନା ଉନ୍ନତି ମୂଳକ କାର୍ଯ୍ୟରେ ଲାଗିଲେ—ଦେଶ ସେବକ ଆଚାର୍ଯ୍ୟ ହରିହର କ୍ଷମତା ରାଜନୀତିରୁ ଦୂରେଇ ରହିଲେ । ମହାତ୍ମା ଗାନ୍ଧୀଙ୍କ ରଚନାତ୍ମକ ଆନ୍ଦୋଳନ ଚଳାଇ ପଦବ୍ରଜରେ ସାରା ଓଡ଼ିଶା ବୁଲିଲେ—ଭୂଦାନ ଯଜ୍ଞର ବାର୍ତ୍ତା ପ୍ରଚାର କରି । ବୃଦ୍ଧ ବୟସରେ ଜ୍ୱରାକ୍ରାନ୍ତ ହୋଇପଡ଼ି ସୁଦ୍ଧା ମଝିରେ ମଝିରେ ବୁହା ହୋଇ ଏ ଯଜ୍ଞର ନିରୂପିତ କାର୍ଯ୍ୟକ୍ରମ ଓ ଭୂମିହୀନ ଦରିଦ୍ରଙ୍କ ଲାଗି ଜନସାଧାରଣଙ୍କ ନିକଟରେ ରାଜ୍ୟର ଅନ୍ଦି କନ୍ଦିରେ ପହଞ୍ଚୁ ଥିଲେ ।

ଶେଷ ଜୀବନରେ ଆଖିକୁ ଦିଶୁ ନ ଥାଏ—ବାଡ଼ି ଖଣ୍ଡିଏ ଧରି ଆଣ୍ଠୁ ନ ଲୁଚ୍ଛ ଖଦଡ଼ ଧୋତି ଖଣ୍ଡିଏ ପିନ୍ଧି ଓ କାନ୍ଧରେ ସେହିପରି ଖଣ୍ଡିଏ ଛୋଟିଏ ଚଦର ପକାଇ ରାଜ୍ୟ ସାରା ବୁଲିଲେ । ଯାହା ସଂସ୍ପର୍ଶରେ ଆସିଲେ 'ଭଲ ମଣିଷ ହୁଅ' ସ୍ନେହ ବୋଳା ଆଶୀର୍ବାଦ ଢାଳିଗଲେ ।

ସୂର୍ଯ୍ୟ ରଶ୍ମୀ ସର୍ବତ୍ର ପଡ଼େ । ମାତ୍ର ସ୍ଥଳ ବିଶେଷରେ ଏହାଦ୍ୱାରା କାହାର ମଙ୍ଗଳ ସାଧିତ ହୁଏ ତ କେଉଁଠି ତାହା କୀଟ ପତଙ୍ଗ ଜନ୍ମ ଓ ନାନାଦି ଜୀବାଣୁ ସୃଷ୍ଟିରେ ସହାୟକ ହୁଏ । ସେ ଆଶୀର୍ବାଦ କାହା ପକ୍ଷରେ କିପରି କାର୍ଯ୍ୟ କରିଛି ଓ କରୁଛି, କିଏ କହିବ ? କିନ୍ତୁ ଆଚାର୍ଯ୍ୟଙ୍କର ସମସ୍ତେ ଭଲ ମଣିଷ ହୁଅନ୍ତୁ ଏହାହିଁ ଏକମାତ୍ର କାମନା ଥିଲା ।

ନୀଳକଣ୍ଠ ଚାଲିଗଲେ ସ୍ୱର୍ଗପୁରକୁ । ଜାତୀୟ କବି ବୀର କିଶୋର ଗାଇଲେ—

"ପହଞ୍ଚିଲା ଯାଇ 'କଣ୍ଠ'ଙ୍କ ରଥ,
ଆସି ଗୋପବନ୍ଧୁ ଧରିଲେ ହାତ ।
ଗୋପ ଚଉଧୁରୀ ଜନତା-ମିତ
ଉଭା ଲିଙ୍ଗରାଜ ତାଙ୍କ ସହିତ ।
ମଙ୍ଗରାଜ ଦେଲେ ହାର ପିନ୍ଧାଇ,
କୁନ୍ତଳା, ଅପର୍ଣ୍ଣା ନେଲେ ବନ୍ଦାଇ ।
କବି ବାଞ୍ଛାନିଧି ରଚିତ ଗୀତ,
ଗାଇ ନିରଞ୍ଜନ ହରିଲେ ଚିତ୍ତ ।
କୃପାସିନ୍ଧୁ ସାଥେ ଗୋଦାବରୀଶ
ପୁଛନ୍ତି ସଭିଏ ହୋଇ ହରଷ
ଚାଲିଛି, 'କିପରି ଶାସନ କଳ ?
କମିଛି ନା ବଢ଼ି— ଯାଉଛି ଦଳ !
× × ×
ତହୁଁ ନୀଳକଣ୍ଠ ଅଳପ ହସି
ତେଜି ଦୀର୍ଘଶ୍ୱାସ କହିଲେ ବସି—
"ପଚାରିଲ ଯାହା କହିବି ପରେ,
ଚିପି ରଖିଛି ମୁଁ ପ୍ରାଣ ଭିତରେ !
ଆଣିଛି ଗୋଟାଏ ବଡ଼ ବାରତା
'ହରି ଭାଇନା'ଙ୍କ ମନର କଥା—
ନ କରିବ ତାଙ୍କୁ କେବେ ଅଲଗା,
ତମ ପାଖେ ଖଣ୍ଡେ ରଖିବ ଜାଗା ।"

ହିନ୍ଦୁର ବିଶ୍ୱାସ, ଯେଉଁମାନେ ଶତ୍‌କାର୍ଯ୍ୟ କରନ୍ତି, ସେମାନେ ସ୍ୱର୍ଗକୁ ଯା'ନ୍ତି । ତାଙ୍କ ପାଇଁ ସେଠି ୧୯୭୧ ଫେବୃୟାରୀ ୨୧ ତାରିଖ ବେଳକୁ ଯେ ଏକ ସ୍ୱତନ୍ତ୍ର ସ୍ଥାନ ସଂରକ୍ଷିତ ଥିବ, ଏକଥା ହିନ୍ଦୁମାନେ ସେଇ ପଦରେ ବିଶ୍ୱାସ କରନ୍ତି ।

ଏହି ଅଜାତ ଶତ୍ରୁ ଋଷି ପୁଙ୍ଗବ ଆର୍ଯ୍ୟ ହରିହର କାମ, କ୍ରୋଧ, ଲୋଭ, ମୋହ ପ୍ରଭୃତି କୌଣସି ରିପୁରେ ବଶବର୍ତ୍ତୀ ନ ହୋଇ ସାରା ଜୀବନ ଦେଶ କାମ କରିଗଲେ । ଯୌବନରେ ସେ ବିପତ୍ନୀକ ହେଲେ—ପୁତ୍ର, କନ୍ୟା ତାଙ୍କର ନାହାନ୍ତି—ହେଲେ ସେ ଆଜି ସାରା ଓଡ଼ିଶାରେ ନମସ୍ୟ । ଓଡ଼ିଶାରେ ପଞ୍ଚସଖାଙ୍କର କୀର୍ତ୍ତି ସମସ୍ତର ମୂଳରେ ଯେ ଏଇ ମହାନ୍ ଆତ୍ମା ହରିହର ଦାସ, ଏହା ଆଉ ବୁଝାଇ କହିବା ବାହୁଲ୍ୟ ମାତ୍ର ।

—୦—

# ଆଚାର୍ଯ୍ୟ ହରିହରଙ୍କ ସ୍ମୃତିରକ୍ଷା କାହିଁକି ?

**ଡକ୍ଟର ଭବଗ୍ରାହୀ ମିଶ୍ର**

ବର୍ତ୍ତମାନର ଓଡ଼ିଶାରେ ପୂର୍ବପିଢ଼ିର ଲୋକଙ୍କ ପାଖରେ ଆଚାର୍ଯ୍ୟ ହରିହର ସୁପରିଚିତ । ତାଙ୍କ ସ୍ମୃତିରକ୍ଷା ପାଇଁ ତାଙ୍କ ନାମରେ ଅନୁଷ୍ଠାନଗୁଡ଼ିଏ ଗଢ଼ାଯାଇଛି । ବର୍ଷକେ ଥରେ କେବଳ ତିଥିବାର ଖୋଜି ଜୟନ୍ତୀ ବା ଶ୍ରାଦ୍ଧ ସଭଟିଏ କରି ଆଚାର୍ଯ୍ୟ ମହାଶୟଙ୍କୁ ମନେପକାଇବା ବା ଶ୍ରଦ୍ଧା ଜଣେଇବା ଏକ ପାରମ୍ପରିକ ରୀତିର ସ୍ମୃତି ଚାରଣ ମାତ୍ର । କିନ୍ତୁ ଏହି ସ୍ମୃତି ଚାରଣର ଅର୍ଥ କଣ ? କେବଳ ପୂର୍ବପୁରୁଷଙ୍କୁ ମନେ ପକାଇ, ସଭସମିତିରେ ଭାଷଣ ଦେଇ ତାଙ୍କ ଆଦର୍ଶରେ ପରିଚାଳିତ ହେବାକୁ ଉଦ୍‌ବୋଧନ ଦେଇ ତାଙ୍କର ସ୍ମୃତି ରକ୍ଷା କରଯାଇ ପାରିବ କି ?

ଦେଶ ଓ ସମାଜ ଏବେ ଏକ ଭିନ୍ନ ରାସ୍ତାରେ ଗତି କରୁଛି । ଭାରତୀୟ ସଂସ୍କୃତି ଏବେ ପ୍ରଚଣ୍ଡ ବାଧା ଓ ପ୍ରତିବନ୍ଧକର ସମ୍ମୁଖୀନ । ଆନ୍ତଃରାଷ୍ଟ୍ରୀୟ କ୍ଷେତ୍ରରେ ଶିଳ୍ପସମୃଦ୍ଧ ଦେଶମାନଙ୍କ ମଧ୍ୟରେ ଭାରତର ସ୍ଥାନ ଦଶମ । ହୁଏତଃ ଆଉ କେତେକ ବର୍ଷ ପରେ ଏ କ୍ଷେତ୍ରରେ ଭାରତର ଉନ୍ନତି ହୋଇପାରେ । ପ୍ରଶ୍ନ ହେଉଛି କେବଳ ଅର୍ଥନୈତିକ ଉନ୍ନତି ଉପରେ କଣ ଏକ ସମାଜର, ସଭ୍ୟତାର ସଂସ୍କୃତିର ମୂଲ୍ୟାୟନ କରଯାଇ ପାରେ ? ଅର୍ଥନୈତିକ ଉନ୍ନତି ନିଶ୍ଚିତ ଭାବରେ କାମ୍ୟ । କିନ୍ତୁ ତା' ସହିତ ସାଂସ୍କୃତିକ ମୂଲ୍ୟବୋଧ ତା'ଳ ଦେଇ ଗତି କରି ନ ପାରିଲେ ଭାରତୀୟ ସମାଜର ଭବିଷ୍ୟତ ଆଶଙ୍କାପ୍ରଦ ହୋଇ ଉଠିବ । ପୃଥିବୀର ବହୁ ଧନୀ ଦେଶ ଏଇଭଳି ପରିସ୍ଥିତି ମଧ୍ୟରେ ଗତିକରି ସାରିଛନ୍ତି । ଇତିହାସରୁ ଏକଥା ଆମକୁ ବୁଝିବାକୁ ପଡ଼ିବ ଯେ "ସଂସ୍କୃତି ସଚେତନତା" ବ୍ୟତିରେକ ଆମ ଭବିଷ୍ୟତ ବଂଶଧର ଧନୀ ହୋଇ ପାରନ୍ତି, ଶିକ୍ଷାପ୍ରାପ୍ତ ହୋଇପାରନ୍ତି ମାନୀ ହୋଇ ପାରିବେନାହିଁ, ଶିକ୍ଷିତ ହୋଇ ପାରିବେ ନାହିଁ ।

ସେଥିପାଇଁ ସରକାରୀ ଓ ବେସରକାରୀ ସ୍ତରରେ ଏଥିପାଇଁ ଉଦ୍ୟମ ହେବା ଆବଶ୍ୟକ । ଆଚାର୍ଯ୍ୟ ମହାଶୟ ଥିଲେ ଭାରତୀୟ ସଂସ୍କୃତିର ଏକ ମୂର୍ତ୍ତିମନ୍ତ ପ୍ରତୀକ । ସବୁ "ଭଲଗୁଣର" ଅଧିକାରୀ ମଣିଷ ଟିଏ ଖୋଜିଲା ବେଳେ ଓ ଭଲ ମଣିଷ ଟିଏ ଖୋଜିଲାବେଳେ ଆଚାର୍ଯ୍ୟ ମହାଶୟ ବାରମ୍ବାର ମନେ ପଡ଼ନ୍ତି । ଆଉ କିଛି ଦିନ ପରେ ତାଙ୍କୁ ଆମର ଚଳନ୍ତି ଇତିହାସ ହୁଏତଃ ଭୁଲି ଯାଇପାରେ । ଜୟନ୍ତୀ ଓ ଶ୍ରାଦ୍ଧରେ ଓ ଶ୍ରଦ୍ଧାର ସହିତ ତାଙ୍କୁ ସ୍ମରଣ କରିବା ବି ହୁଏତଃ କ୍ଷୀଣରୁ କ୍ଷୀଣତର ହୋଇଯାଇପାରେ । ସେଥିପାଇଁ ଆମର ଚେଷ୍ଟା ଏକ ଆନୁଷ୍ଠାନିକ ଉଦ୍ୟମ ମାତ୍ର ।

ଏ ଅନୁଷ୍ଠାନର ଲକ୍ଷ୍ୟ "ଆଚାର୍ଯ୍ୟମହାଶୟଙ୍କର" ସ୍ମୃତିକୁ ରକ୍ଷା କରିବା ଓ ତା'ସଙ୍ଗେ ସଙ୍ଗେ ଯେଉଁ ଶିକ୍ଷା ଓ ସମାଜ ସେବା କ୍ଷେତ୍ରରେ ସେ ଜୀବନ ବିନିଯୋଗ କରିଥିଲେ, ସେଇ କ୍ଷେତ୍ରରେ ଅନାଗତ ଭବିଷ୍ୟତ ପାଇଁ କିଛି କାର୍ଯ୍ୟ କରିଚାଲିବା । କାଳହିଁ ବିଚାର କରିବ—ଏ ଆନୁଷ୍ଠାନିକତାର ଆବଶ୍ୟକତା କେତେ ? ଏବେ ସବୁ ଆଲୋଚନା, ସମାଲୋଚନାକୁ ନୀଳକଣ୍ଠ ଭଳି କଣ୍ଠସ୍ଥ କରି ଚାଲିବୁ ଆମେ ସବୁ ଆମ ସ୍ୱାର୍ଥ ଦୃଷ୍ଟିରୁ, ଭବିଷ୍ୟତ ବଂଶଧରଙ୍କ ସ୍ୱାର୍ଥ ଦୃଷ୍ଟିରୁ, ଓ ଏଇ ସମାଜର ସ୍ୱାର୍ଥଦୃଷ୍ଟିରୁ ଆଚାର୍ଯ୍ୟ ମହାଶୟଙ୍କୁ ବେଶୀ ବେଶୀ ମନେ ପକାଇବା ଓ ତାଙ୍କ ଜୀବନର ଧାରାକୁ ଅନୁସରଣ କରି ଆମ ପାଇଁ କିଛି କାର୍ଯ୍ୟ କରିଯିବା । ଫଳାଫଳକୁ ଅପେକ୍ଷା ନ ରଖି କାର୍ଯ୍ୟ କରିଯିବା ଆମର ଦାଇତ୍ୱ । ଏଇ ଦାଇତ୍ୱକୁ ଯେଉଁମାନେ ଉପଲବ୍‌ଧି କରୁଛନ୍ତି, ସେ ସମସ୍ତଙ୍କପାଇଁ ଆମ ଅନୁଷ୍ଠାନର ଦ୍ୱାର ଉନ୍ମୁକ୍ତ ରହିଛି ଓ ରହିବ । ଯେଉଁମାନେ ଆମ ମାନଙ୍କ ଯାତ୍ରାପଥରେ ପ୍ରତିବନ୍ଧକ ସୃଷ୍ଟି କରୁଛନ୍ତି, ଯେଉଁମାନେ ଯେ କୌଣସି କାରଣରୁ ଆମକୁ ଘୃଣା କରୁଛନ୍ତି ବା ଯେଉଁମାନେ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ଆମକୁ ସମର୍ଥନ କରୁଛନ୍ତି, ସେ ସମସ୍ତଙ୍କୁ ଆମେ ଶ୍ରଦ୍ଧାର ସହିତ ସ୍ମରଣ କରୁଛୁ ଓ କରିବୁ । କାରଣ ଅନୁଷ୍ଠାନର ସଭ୍ୟଭାବରେ ଆମର ସମ୍ମାନ ଅପେକ୍ଷା ଆଚାର୍ଯ୍ୟମହାଶୟଙ୍କର ସମ୍ମାନ ଆମ ନିକଟରେ ଅତ୍ୟନ୍ତ ମୂଲ୍ୟବାନ୍ ।

ଏକାଦିନକେ "ଭଲମଣିଷ" ହେବା ସମ୍ଭବ ନୁହେଁ । ଏକା ଦିନକେ ଅନୁଷ୍ଠାନ ତାର ଲକ୍ଷ୍ୟରେ ପହଞ୍ଚିବା ସମ୍ଭବ ନୁହେଁ —କିନ୍ତୁ ପ୍ରତିମୁହୂର୍ତ୍ତରେ ଆମର ଚିନ୍ତା ଓ ଚେତନା "ଆଚାର୍ଯ୍ୟମହାଶୟଙ୍କର ସ୍ମୃତିସିକ୍ତ" ହୋଇ ଆମକୁ ଅମଡ଼ା ବାଟରେ ମାଡ଼ି ଚାଲିବାକୁ ସାହସ ଦେଉ । ୧୯୮୪ ମସୀହାରେ ଏହାହିଁ କାମନା ମାତ୍ର ।



# ଜନ୍ମଭୂମି ଭାରତ

ଶ୍ରୀ ବିଶ୍ୱନାଥ ତ୍ରିପାଠୀ

ଜନ୍ମ ଭୂମି ଭରତ ଆମଜନ୍ମ ଭୂମି ଭରତ
ସମଜାତି ସମଧର୍ମ ଶାନ୍ତି ମୈତ୍ରୀ ଭରତ ।
ହିମାଳୟ ମା' ର ମସ୍ତକେ ଶୋହେ
ସାଗର ମା'ର ଚରଣ ଧୁଏ
ଗଙ୍ଗା, ଯମୁନା, ସିଂଧୁ ନୀର
ପବିତ୍ର ଶାନ୍ତ ପ୍ରବାହିତ । ଜନ୍ମଭୂମି ଭରତ... ... ... ...(୧)

ମହାତ୍ମା ଗାନ୍ଧି ରଣା ଶିବାଜୀ
ଗୁରୁଗୋବିନ୍ଦ ବୀରନେତାଜୀ
ବୀର ପ୍ରସବିଣୀ ସୁର ପ୍ରସବିଣୀ
ସ୍ୱର୍ଣ୍ଣ ଗର୍ଭା ଭରତ ।।
ଜନ୍ମଭୂମି ଭରତ ... ... ... ... ... ...(୨)

ଯାହାର ସେନେହ ଲଭିବା ପାଇଁ
ଦେବତା ସରଗ ସୁଖ ଲଭଇ
ନିଜେ ଭଗବାନ ଅବତାର ନେଇ
ଅବତରେ ଯହିଁ ଜନିତ ।।
ଜନ୍ମ ଭୂମି ଭରତ ... ... ... ... (୩)

ସରଗଠୁ ବଳି ମୋ ଜନମ ଭୂମି
ଏ ଜୀବନ ଯାଉ ତାହାର ପାଇଁ
ସଦା ବଂଦେ ଚରଣେ ତା'ହାର
କାମନା ତା' ଶୁଭ ଆଶିଷ ।।
ଜନ୍ମ ଭୂମି ଭରତ ... ... ... ... ... ... ...(୪)

XXX

# ବସନ୍ତାଞ୍ଜଳି

ଶ୍ରୀ ଜିତେନ୍ଦ୍ର ପ୍ରସାଦ ପୃଷ୍ଟି

ହସନ୍ତ ମଳୟ ସାଥେ
ନମନୀୟ ବସନ୍ତର ସ୍ୱାଗତ ଝଙ୍କାର ।

ବିଭ୍ରାଜ ବନାନୀର ସ୍ୱପ୍ନିଳ ଶଯ୍ୟାରେ
ସବୁଜିମା ସ୍ୱପ୍ନ ଦେଖେ ମୃତ୍ୟୁ ଅତୀତର ।

ନବକଳେବର ହୋଇ ବୃକ୍ଷ ସମ୍ପ୍ରଦାୟ
ମସ୍ତକରେ ପତ୍ର ଶିରସ୍ତ୍ରାଣ
ନୀରବ ଦର୍ଶକ ସମ ଶୁଣୁଛନ୍ତି ବସନ୍ତର ଆବାହନ ମନ୍ତ୍ର
କାକଳୀ ର ମଧୁର କୂଜନେ ।

ବସନ୍ତର ଦୀପ୍ତିମନ୍ତ ମହୋତ୍ସବ ନିସ୍ତବ୍ଧ ଅଞ୍ଚଳୁ
ତୁହାଇ ତୁହାଇ ଶୁଭେ ଶୁଭ ସ୍ୱର୍ଣ୍ଣ ଶଂଖ
ପୁଣି ସେହି ସୁମଧୁର ପ୍ରଭତ ସଂଗୀତ ।

"ସର୍ବେ ଭବନ୍ତୁ ସୁଖୀନଃ
ସର୍ବେ ସନ୍ତୁ ନିରମୟଃ
ସର୍ବେ ଭଦ୍ରାଣି ପଶ୍ୟନ୍ତୁ
ମା କଶ୍ଚିତ୍ ଦୁଖଃ ଭକ୍ ଭବେତ୍"
ହେ ; ଉଜ୍ଜଳ ଦିବ୍ୟଜ୍ୟୋତି ପରମାତ୍ମା ଆଦିଶକ୍ତି
ସଞ୍ଜୀବିତ କର ଆଜି ଉତ୍କଳୀୟ ଲୁପ୍ତ ଗୌରବକୁ
ତଥାମୃତ ଐତିହ୍ୟକୁ ।

ଉଠାଅ ତବ ଗାଣ୍ଡୀବ, ଶକ୍ତି ଦିଅ ସୁଦର୍ଶନେ
ଜାଗିଉଠୁ ଶୁଣିତବ ବିଗତ ବିସ୍ମୃତି
ଏହି ନିସ୍ୱ ଧୂସର ଧରାରେ ।

XXX

# ମୋ ପ୍ରଭୁଙ୍କୁ ପଦେ

ସୁବାଷ ଚନ୍ଦ୍ର ମହାନ୍ତ

ହେ ନାଥ ତୁମେ ପରା ଭକତର ବନ୍ଧୁ
ତୁମ୍ଭନାମ ଧରି ଭକ୍ତ ପାରିହୁଏ ସିନ୍ଧୁ ।
ଭକତର ସବୁ ତୁମେ ସେ ବି ତୁମର
ଭକ୍ତବିନା ଅନ୍ୟମାନେ ହୋଇବେ କାହାର ?

ନଗଣ୍ୟ ଜୀବଟିଏ ମୁଁ ତୁମରି ସୃଷ୍ଟିର
ଛୁଇଁବାକୁ ଇଛାମୋର ତୁମରି ପୟର
ମାତ୍ର ମୁଁ ପାରୁନି ହୋଇ ତୁମରି ଭକତ
କେମିତି ଛୁଇଁବି ପାଦ ତୁମେହିଁ କୁହ ତ ?

ପାଦ ଦୁଇଟାକୁ ପୁଣି କରିଛ ଅଦୃଶ୍ୟ
ଭକ୍ତ ମୋତେ କରିନିଅ ଦେଖିବି ଅବଶ୍ୟ ।

କେତେଥର ମନେହୁଏ ମନ୍ଦିର ଯିବାକୁ
କେବେ ଭାବେ ତୁମପାଇଁ ଦୀପଜାଳିବାକୁ
ପୂଜାରିଣୀ ହୋଇ ମୁହିଁ ଭୋଗ ସଜାଡ଼ିବି
ତୁମ ପ୍ରେମଗୀତେ ମର୍ତ୍ତ୍ୟ ଦୁନିଆ ଭୁଲିବି
ଉପବାସେ ସୁମରିବି ତୁମରି ନାମକୁ
ଡରଭୟ ଜୀବନରେ ନଥିବ କାହାକୁ

କିନ୍ତୁହାୟ ସବୁକଥା ଭାବନାରେ ରହେ
ସେଥିପାଇଁ କେବେ ତୁମ ଦେଖା ନାହିଁ ପାଏ

ତୁମେତ ବଡ଼ ଲଞ୍ଚୁଆ ଜଗତ ଠାକୁର
ତୁମକୁ ପୂଜିବ ଯିଏ ତୁମେହିଁ ତାହାର
ଜ୍ଞାନମୋର ନାହିଁ ମୁହିଁ ନିହାତି ଅବୋଧ
ବିନାପୂଜାରେ ମୋତେ ଥରେ ଦିଅବୋଧ
ପାରୁନି ମୁଁ ଭକ୍ତହୋଇ ନିଅଭକ୍ତକରି
ଜୀବମୋର ଗଲିଯାଉ ତୁମନାମ ସ୍ମରି ।

●

# A SKETCH OF HISTORY

Pradip Kumar Patra

History of history is very old. It plays a great role in the field of education. No doubt, the scope of history is a very vast subject. The word 'HISTORY' has been derived from the Greek word 'historia' which means 'what has actually happend in the past''. History is a history of man, Since the dawn of the civilization it has been playing a significant role in the development of the mankind. 'Man' at the centre of history is not merely a rational datum, but a living soul. Man wanted the Past to live for the Present, and the present to live for the Future. As history is a recorded subject for which people are taking advantage of the experiences of the people of the past generations.

Number of educationists and eminent schalars have defined history in various ways. Dr. Radhakrishnan has defined history as 'The memory of a nation or race'. Rapson says, "History is a connected account of the course of events and the progress of ideas. It is interesting to note that some scholars are of the opinion about history as : 'God manifasted himself in history'. Some scholars are of the opinion that history is a science, while others are of the view that it is not a science. It is an Art. What is science ? Science is a 'Systematic study of knowledge' that means, a strong reiationship between the cause and its effect of a particular phenomenon. But historical facts are the product of human thoughts and actions. In no way historical data would be available for observation and experimentation. No doubt sciences are of two kinds, physical science and social science. Thats why history may not be a Physical Science but it is certainly a Social Science. Similarly Art is nothing but the practical application of the knowledge acquired by Science. Art is a part of literature of fine Art. However when History discovers truth it is a science and when it establiseed and describ those truths it becomes an Art. According to Lord Action, study of history is critical, objective and new.

Go back to thousand and thousand years back when there was no systematic recorded history. We have to depend upon the Legend. No distinction between history and mythology. Prior to 19th century, history was more individual and personal in character. But now its purpose was to understand the actual present with the help of the history of the Past. Now the Research scholars have tried to draw the true picture of the past, which is the basis of our complicated present.

However, for the convenience of the study, Historians have divided the

subject in to various divisions on the basis of Geography, Time and conditions.

1. From Geographical point of view, it has been divided in to four parts :
   a) World History. b)National History
   c) Regional History, d) Local History

2. Division on the Basis of Time :
   a) History of the Early Age
   b) Ancient History, c) Medieval History, d) Modern History.

3. Division onthe Basis of Condition :
   a) Political History, b) Economic History, c) Religious History d) Social History.

Each and every diyision should be taught indepndently without any narrow out look as the classifications are concerned. The purpose of classification of History leads to know in detail, the variaus characteristics, qualities and requirements of each division. It provides us the knowledge of the past generations and so as to inspire us to broaden the paths of our future. At last History is nothing but a process of gradual development.

●

**କୃଷି—** * ୨ ଲକ୍ଷ ହେକ୍ଟରରୁ ଅଧିକ ଅମଳକ୍ଷମ ଧାନଗଛ ପ୍ରବର୍ତ୍ତନ କରଯାଇଛି ।

**ସମବାୟ—** * ପ୍ରାଥମିକ ସମବାୟ ସମିତି ସ୍ତରରେ ସଭ୍ୟସଂଖ୍ୟା ୨୭ ଲକ୍ଷକୁ ବୃଦ୍ଧି ପାଇଛି । ଷଷ୍ଠ ଯୋଜନା ପାଇଁ ଏହାର ଲକ୍ଷ୍ୟ ୨୫·୫୦ ଲକ୍ଷ୍ୟ ଥିଲା ।

**ଜଳସେଚନ—** * ଅଧିକ ୨ ୫ ଲକ୍ଷ ହେକ୍ଟର ଜମିରେ ଜଳସେଚନର ସୁବିଧା ସୃଷ୍ଟି କରଯାଇଛି ।

**ପାନୀୟ ଜଳ—** * ୧୯୮୧ ଜୁନ୍‌ଠାରୁ ୧୯୮୩ ନଭେମ୍ବର ଶେଷ ସୁଦ୍ଧା ଜଳାଭବ ଥିବା ଗ୍ରାମରେ ୨୩,୮୫୮ ନଳକୂପ ବସା ଯାଇଥିଲା ।

ବିଗତ ଦୁଇବର୍ଷରେ ମରୁଡ଼ି ଓ ବନ୍ୟା ବିପନ୍ନ ଗ୍ରାମରେ ଆଉ ଅଧିକ ୭୫୭୧ ଟି ନଳକୂପ ବସା ଯାଇଛି ।

**ଶିଳ୍ପ—** * ପ୍ରାୟ ୭୯ କୋଟି ଟଙ୍କା ବ୍ୟୟରେ ପ୍ରତିଷ୍ଠିତ ୬୦ ଗୋଟି ବୃହତ୍ ଓ ମଧ୍ୟମ ଶିଳ୍ପ କାରଖାନାରୁ ଉତ୍ପାଦନ ଆରମ୍ଭ ହୋଇଛି ଏବଂ ଏସବୁ ପ୍ରକଳ୍ପରେ ସମ୍ପ୍ରତି ୭ ହଜାର ଲୋକ ନିଯୁକ୍ତି ପାଇଛନ୍ତି ।

୫୮ କୋଟି ଟଙ୍କାରୁ ଊର୍ଦ୍ଧ୍ୱ ଟଙ୍କା ବିନିଯୋଗରେ ପ୍ରତିଷ୍ଠିତ ୮୨୩୪ ଟି କ୍ଷୁଦ୍ର ଶିଳ୍ପାନୁଷ୍ଠାନ ପ୍ରତିଷ୍ଠା କରଯାଇଛି ଓ ତହିଁରେ ୬୦ ହଜାର ଲୋକ ନିଯୁକ୍ତି ପାଇବେ ।

**ଆଦିବାସୀ ଓ ହରିଜନ** * ଗରିବ ଲୋକ ଉନ୍ନତି ସାଧନ କାର୍ଯ୍ୟକ୍ରମ ଅନୁଯାୟୀ ବିଗତ ତିନିବର୍ଷ ମଧ୍ୟରେ ୨,୩୮,୫୬୮ ଟି ଆଦିବାସୀ ପରିବାର ଓ ଓ ୩,୪୮,୪୬୯ ଟି ହରିଜନ ପରିବାରକୁ ଅର୍ଥନୈତିକ ଦୃଷ୍ଟିକୋଣରୁ ସାହାଯ୍ୟ ଦିଆଯାଇଛି ।

**ମହିଳାମାନଙ୍କ—** ମହିଳାମାନଙ୍କ ନିଯୁକ୍ତି କ୍ଷେତ୍ରରେ ସରକାର ଅଗ୍ରାଧିକାର ଦେଇଛନ୍ତି । ତଦନୁଯାୟୀ

**ନିଯୁକ୍ତି ସୁବିଧା** ୫୦୦ ଟି ନିମ୍ନ ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷୟିତ୍ରୀ ଭାବେ, ୨୦୦ ଟି ପ୍ରୌଢ଼ ଶିକ୍ଷା କେନ୍ଦ୍ରରେ ଶିକ୍ଷୟିତ୍ରୀ ଭାବେ, ପ୍ରତ୍ୟେକ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରରେ ୨ ଟି ସ୍ୱାସ୍ଥ୍ୟ ପରିଦର୍ଶିକା, ଶିଶୁକଲ୍ୟାଣ ଯୋଜନାରେ କର୍ମୀଭାବେ ୪,୫୦୦ ଜଣ, ଇପିଟ୍ରୋନ୍ ଟାଇମ୍‌ସ କାରଖାନାରେ ୩୦ ଜଣ ଏବଂ ପଲ୍ଲୀ ବସ୍ତ୍ର ଉତ୍ପାଦନ କେନ୍ଦ୍ରଗୁଡ଼ିକରେ ୧୦ ହଜାର ମହିଳାଙ୍କୁ ନିଯୁକ୍ତି ଦିଆଯିବ ।

**ସୂଚନା ଓ ଲୋକ ସଂପର୍କ ବିଭାଗ, ଭୁବନେଶ୍ୱର**

# Mayur Publications

C-5, Unit-3, Kharavel Nagar, Bhubaneswar-751001
Phone : 52672

| ବହିର ନାମ | ଲେଖକର ନାମ | ବହିର ମୂଲ୍ୟ | |
|---|---|---|---|
| | | ବନ୍ଧେଇ | ସାଧା |
| ୧. ସ୍ମୃତି ଓ ଓଡ଼ିଶା | ଅଧ୍ୟାପକ ଚିତ୍ତରଞ୍ଜନ ଦାସ | ଟ ୨୦·୦୦ | ଟ ୧୭ ୦୦ |
| ୨. ଅଙ୍କ ପା ଜପ | ଅଧ୍ୟାପକ ରାମଚନ୍ଦ୍ର ସେଠୀ | | ଟ ୬-୦୦ |
| ୩. ମୁଁ | ଡଃ ଭବଗ୍ରାହୀ ମିଶ୍ର | ଟ ୧୩-୦୦ | ଟ ୧୦-୦୦ |
| ୪. ଗଣତନ୍ତ୍ର : ମୋ ଦୃଷ୍ଟିରେ | ଡଃ ଭବଗ୍ରାହୀ ମିଶ୍ର | ଟ ୧୩-୦୦ | ଟ ୧୦-୦୦ |
| ୫. ମନର ନିଆଁ | ଗୋପୀନାଥ ମହାନ୍ତି | ଟ ୧୪-୦୦ | ଟ ୧୨-୦୦ |
| ୬. ହାଉ ନଗରୀର କାହାଣୀ | ରମେଶ ଧଳ | | ଟ ୩-୦୦ |
| ୭. ଅସ୍ତ ସୂର୍ଯ୍ୟର ଛାଇ | ଦଶରଥ ସାମଲ | ଟ ୧୫-୦୦ | ଟ ୧୩·୦୦ |
| ୮. ଅଳଙ୍କାର ଶାସ୍ତ୍ର ପରିଚିତି | ଡଃ ଭବଗ୍ରାହୀ ମିଶ୍ର ଓ ଶାନ୍ତିଲତା ମିଶ୍ର | ଟ ୧୭-୦୦ | ଟ ୧୪-୦୦ |
| ୯. ସଭ୍ୟତାର ମୁହଁ | ବ୍ରଜନାଥ ରଥ | ଟ ୧୨-୦୦ | ଟ ୧୦-୦୦ |
| ୧୦. ଅପ୍ରବନ୍ଧ | ରାମଚନ୍ଦ୍ର ସେଠୀ | | ଟ ୧୫-୦୦ |
| ୧୧. ଏକବିଂଶ ଶତାବ୍ଦୀ ପାଇଁ ଗଳ୍ପ | ଶାନ୍ତନୁ କୁମାର ଆଚାର୍ଯ୍ୟ | ଟ ୧୭-୦୦ | ଟ ୧୪-୦୦ |
| ୧୨. ପ୍ରେମ ଓ ପ୍ରଣୟ | ବିନୋଦ ରାଉତରାୟ | ଟ ୯-୦୦ | ଟ ୬-୦୦ |
| ୧୩. ଆମେ ଓ ସେମାନେ | ଅଧ୍ୟାପକ ଶତ୍ରୁଘ୍ନ ନାଥ | | ଟ ୬ ୦୦ |
| ୧୪. ଶିକ୍ଷାର ଧାର | ଅଧ୍ୟାପକ ଶତ୍ରୁଘ୍ନ ନାଥ | ଟ ୧୭-୦୦ | ଟ ୧୪-୦୦ |
| ୧୫. ହୋଇଲେ ଗୋ ଜାତି ଉନ୍ନତି | ଡଃ ବିଭୂତି ଭୂଷଣ ରଥ | ଟ ୩୦-୦୦ | ଟ ୨୫-୦୦ |
| ୧୬. ଖସଡ଼ା ବାଟ | ନିତ୍ୟାନନ୍ଦ ମହାପାତ୍ର | ଟ ୧୨·୦୦ | ଟ ୯ ୦୦ |
| ୧୭: ଶେଷ ଉପହାର | ରମେଶ ଧଳ | ଟ ୧୫-୦୦ | ଟ ୧୨-୦୦ |
| ୧୮. ଅଳ୍ପ କଥାର ଗଳ୍ପ କେତୋଟି | ଅଧ୍ୟାପକ ବିଶ୍ୱରଞ୍ଜନ | ଟ ୯-୦୦ | ଟ ୭-୦୦ |
| ୧୯. ସମ୍ଭବ ଅସମ୍ଭବ | ଅଧ୍ୟାପକ ହରିହର ମିଶ୍ର | ଟ ୫-୦୦ | ଟ ୩-୦୦ |
| ୨୦. ଘରଡିହ | ନିତ୍ୟାନନ୍ଦ ମହାପାତ୍ର | ଟ ୫୦-୦୦ | |
| ୨୧. ନୀଳହ୍ରଦର ଚିତ୍ରକର | ଡଃ ଦୀନନାଥ ପାଠୀ | ଟ ୨୦-୦୦ | ଟ ୧୫-୦୦ |
| 22. Carpentr's Country (Life History of an American farmer) | Dr. Bhabagrahi Misra | Rs. 15-00 | Rs. 10-00 |
| 23. Teaching of Mother Tongue | Dr. Bishnupada Panda | Rs. 20-00 | Rs. 14-00 |
| 24. A Critiqe on Educationai Evaluation Research. | Chitta Samant | Rs. 25-00 | Rs. 15-00 |
| 25· Aspects of Reniassance in India | Annada Sankar Ray | Rs. 16-00 | Rs. 12-00 |
| 26. Education : Styles and Strategies. | Prof. Satrughna Nath | Rs. 45-00 | Rs. 25-00 |
| 27. Adoption of Dairy Innovations. | Dr. Bibhuti Bhusan Rath | Rs. 95-00 | |

**For all your requirements : for the Library, please write to us for competitive rates.**



"ଏତିକି ଭବିଷ୍ୟତ ମନେ ରଖିବ, ସେ ଥିଲେ ଜାତିର ଜଣେ ଆଚାର୍ଯ୍ୟ । ନୈତିକତାର ପ୍ରତୀକ ଓ ସମସ୍ତଙ୍କର ସମବେଦନଶୀଳ ଶୁଭେଚ୍ଛୁ ଓ ଆଶୀର୍ବାଦକ । ତାଙ୍କର ଦେହାନ୍ତ ଘଟିଗଲେ ମଧ୍ୟ ତାଙ୍କର ଆଶୀର୍ବାଦ ଅଲକ୍ଷ୍ୟ ଭାବରେ କାର୍ଯ୍ୟ କରି ଚାଲିବ ।"

—ହରେକୃଷ୍ଣ ମହତାବ

Printed at : Press Abhipsa, 191, Kharvel Nagar, Bhubaneswar-751001